ସ୍ୱାମୀ ନିରଞ୍ଜନଙ୍କ

# ଲଘୁ ବେଦାନ୍ତ ପ୍ରଶ୍ନୋତ୍ତରୀ



ଓଡ଼ିଆ ରୂପାନ୍ତର

**ରମେଶ ଦାସ**

# ଲଘୁ ବେଦାନ୍ତ ପ୍ରଶ୍ନୋତ୍ତରୀ

ମୂଳ ହିନ୍ଦୀ ରଚନା :
ସ୍ୱାମୀ ନିରଞ୍ଜନଜୀ ମହାରାଜ

ଓଡ଼ିଆ ଅନୁସୃଜନ :
ରମେଶ ଦାସ



ପ୍ରକାଶକ : ନିରଞ୍ଜନ ବୁକ୍ ଟ୍ରଷ୍ଟ
ପ୍ରଥମ ସଂସ୍କରଣ : ୧୯୯୪
ଦ୍ୱିତୀୟ ସଂସ୍କରଣ : ନବବର୍ଷ ୨୦୧୨

ମୁଦ୍ରଣ ଏବଂ ଅଳଙ୍କରଣ : ଦିବ୍ୟ ମୁଦ୍ରଣୀ, ଭୁବନେଶ୍ୱର-୨ (ଓଡ଼ିଶା)
ଫୋନ୍ : ୯୪୩୭୦୦୬୫୬୬

ପ୍ରଚ୍ଛଦ ପ୍ରସ୍ତୁତି : ବିଭୁ
ମୂଲ୍ୟ : ₹ ୫୦ /-



# ପ୍ରସ୍ତାବନା

ଆମର ପରମ ପୂଜ୍ୟ ଚିର ସ୍ମରଣୀୟ ଯୁଗାବତାରୀ ବେଦାନ୍ତ କେଶରୀ ସ୍ୱାମୀ ନିରଞ୍ଜନ ଜୀ ମହାରାଜଙ୍କୁ ବିଭିନ୍ନ ସମୟରେ ବିଭିନ୍ନ ଗ୍ରାମ, ନଗର, ସହର ତଥା ସ୍ଥାନମାନଙ୍କରେ ଶ୍ରଦ୍ଧାଳୁ ଶ୍ରୋତା, ଭକ୍ତ ତଥା ଅନୁଗାମୀମାନେ ନିଜ ନିଜ ମନର ସଂଶୟମୋଚନ ପାଇଁ ପ୍ରଶ୍ନ ପଚାରିଥାନ୍ତି । ସ୍ୱାଭାବିକ କୋମଳ ଉଦାର ଚିତ୍ତ କରୁଣାସାଗର ସ୍ୱାମୀଜୀ ସମୟାନୁସାରେ ପତ୍ର ମାଧ୍ୟମରେ ଅଥବା ସାକ୍ଷାତ୍‌ରେ ସେମାନଙ୍କ ଶଙ୍କା ସମାଧାନ କରି ଆସୁଛନ୍ତି । ମୁଁ ପତ୍ରାକାରରେ ପ୍ରେରିତ ସେହି ସବୁ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନୋତ୍ତରଗୁଡ଼ିକୁ ଏଣେ ତେଣେ ବିକ୍ଷିପ୍ତ ହୋଇ ରହିଥିବା ମୋତି ଭଳି ମୋର ସହପାଠୀମାନଙ୍କ ପାଖରେ ଦେଖି ମୋ ମନରେ ଏହି ପ୍ରେରଣା ଜାଗ୍ରତ ହେଲା ଯେ ଏହି ସବୁ ପତ୍ରଗୁଡ଼ିକୁ ସବୁ ଜାଗାରୁ ସଂଗ୍ରହ କରି ଯଦି ଓଡ଼ିଆ ଭାଷାନ୍ତର ମାଧ୍ୟମରେ ଆଗାମୀ ନୂତନ ଜିଜ୍ଞାସୁମାନଙ୍କର ମନନ, ଚିନ୍ତନର ସୁଯୋଗ ପାଇଁ ମୁଦ୍ରଣ କରି ଦିଆଯାଏ, ତେବେ ଅନେକ ମୁମୁକ୍ଷୁମାନଙ୍କର କଲ୍ୟାଣ ହୋଇପାରିବ । ସେହି ଲୋକ କଲ୍ୟାଣକର ଉଦାର ଭାବନା ନେଇ ମୁଁ ମୋର ପରମ ଶ୍ରଦ୍ଧେୟ ସ୍ୱାମୀଜୀ ମହାରାଜଙ୍କୁ ଏହି କାର୍ଯ୍ୟ ପାଇଁ ନିବେଦନ କଲି । ସେ ଆନନ୍ଦର ସହିତ ମୋତେ ଅନୁମତି ଦେଲେ ଏବଂ ମୁଁ ଯଥାଶୀଘ୍ର ସେହି କାର୍ଯ୍ୟରେ ଲାଗିଗଲି ଏବଂ ସବୁ ସ୍ଥାନର ପତ୍ରଗୁଡ଼ିକୁ ସଂଗ୍ରହ କରି ଓଡ଼ିଆ ଭାଷାଭାଷୀ

ମୁମୁକ୍ଷୁମାନଙ୍କ ପାଇଁ ଭାଷାନ୍ତର କରି ତାହାକୁ 'ଲଘୁ ବେଦାନ୍ତ ପ୍ରଶ୍ନୋତ୍ତରୀ' ନାମରେ ପ୍ରସ୍ତୁତ କରୁଅଛି ।

ସ୍ୱାମୀଜୀଙ୍କ ପ୍ରଦତ୍ତ ପ୍ରଶ୍ନୋତ୍ତର ଗୁଡ଼ିକ ସବୁ ଅତ୍ୟନ୍ତ ସରଳ, ସୁଗମ, ଶାସ୍ତ୍ର ପ୍ରମାଣ ସିଦ୍ଧ ତଥା ବୈଜ୍ଞାନିକ ଯୁକ୍ତି ସମ୍ବଳିତ । ଅନୁପମ, ପ୍ରକୃଷ୍ଟ ଅକାଟ୍ୟ ଦୃଷ୍ଟାନ୍ତ ଏବଂ ଅନୁଭବ ଦ୍ୱାରା ଏହି ଗ୍ରନ୍ଥ ଜିଜ୍ଞାସୁମାନଙ୍କର ମନକୁ ଆଚ୍ଛନ୍ନ କରିଦେଲା ଭଳି ଅଜ୍ଞାନ ତିମିରକୁ ଦୂର କରିବା ଦିଗରେ ସୂର୍ଯ୍ୟ ଭଳି କାର୍ଯ୍ୟ କରିବ ।

ସ୍ୱାମୀଜୀ ସମସ୍ତ ପ୍ରାଣୀମାନଙ୍କ ସୁହୃଦ । ସେ ସମସ୍ତଙ୍କର ପରସ୍ପର ମଧ୍ୟରେ ଏକତା, ପ୍ରେମ, ସମତା ବୈରହୀନତା ଶିକ୍ଷା ଦେଇଥାନ୍ତି । ସେ ମନୁଷ୍ୟକୁ ଧର୍ମ ମାଧ୍ୟମରେ ନିଜ ଜୀବନକୁ ସର୍ବୋନ୍ନତ କରିବା ପାଇଁ ସବୁବେଳେ ଉପଦେଶ ଦେଇଥାନ୍ତି । ଗୃହସ୍ଥମାନଙ୍କୁ ଅସଙ୍ଗ, ନିର୍ଲିପ୍ତ, ନିର୍ମୋହ, ନିରହଂକାରୀ, ଶାନ୍ତିପ୍ରିୟ ତଥା ଛନ୍ଦ କପଟ, ରାଗଦ୍ୱେଷ ହୀନ ଦୈବୀ ସମ୍ପଦକୁ ଧାରଣ କରିବା ପାଇଁ ଉପଦେଶ ଦେଇ ଆସୁଛନ୍ତି । ସମସ୍ତଙ୍କର ସାତ୍ତ୍ୱିକ ଆହାର କରିବା ଏବଂ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ନିର୍ବାହ କରିବା ଉପରେ ସ୍ୱାମୀଜୀ ବିଶେଷ ଗୁରୁତ୍ୱ ଆରୋପ କରିଥାନ୍ତି ।

ସ୍ୱାମୀଜୀଙ୍କ ଉପଦେଶ ଗୁଡ଼ିକରେ ଶ୍ରୋତାମାନଙ୍କୁ ଶରୀରରେ ଥାଇ ଅଶରୀର ଅବସ୍ଥାର ଅନୁଭବ କରାଇଦେବାର ଅଦ୍ଭୁତ କଳା ରହିଛି । ସ୍ୱାମୀଜୀ ସବୁ ଶ୍ରଦ୍ଧାଳୁମାନଙ୍କୁ ନିଜର ସ୍ୱଳ୍ପ ସମୟର ସହାବସ୍ଥାନ ମାଧ୍ୟମରେ ଆତ୍ମାନୁଭୂତିକୁ ହାତରେ ଧରି ପ୍ରତ୍ୟକ୍ଷ ଫଳ (ହସ୍ତାମଳକବତ୍) ଭଳି ଅପରୋକ୍ଷ ଅନୁଭବ କରାଇ ଦିଅନ୍ତି ।

ସ୍ୱାମୀଜୀଙ୍କ ପ୍ରତ୍ୟକ୍ଷ ସାହଚର୍ଯ୍ୟ ପାଇଥିବା ଏବଂ ନପାଇଥିବା ପ୍ରତ୍ୟେକ ମୁମୁକ୍ଷୁ ସାଧକମାନଙ୍କ ପାଇଁ ଏହି କ୍ଷୁଦ୍ର ଗ୍ରନ୍ଥଟି ସ୍ୱରୂପ ଲାଭ ଦିଗରେ ଯେ ଯଥେଷ୍ଟ ସହାୟକ ହେବ – ଏଥିରେ ସନ୍ଦେହ ନାହିଁ ।

**ରମେଶ**
ଅକ୍ଷୟ ତୃତୀୟା
୧୫/୫/୯୪

# ଦ୍ୱିତୀୟ ପ୍ରକାଶନ ଅବକାଶରେ

ଚାହୁଁ ଚାହୁଁ ଦୀର୍ଘ ଷୋହଳ ବର୍ଷ ବିତିଯାଇଛି । ପୁନଶ୍ଚ ସାଧକ, ଜିଜ୍ଞାସୁ, ମୁମୁକ୍ଷୁମାନଙ୍କୁ ଦିବ୍ୟଦୃଷ୍ଟି ଦେବା ପାଇଁ ଲଘୁ ବେଦାନ୍ତ ପ୍ରଶ୍ନୋତ୍ତରୀ ଆତ୍ମପ୍ରକାଶ କରିଛି । ଆଜି ସେହି ପୁରୁଣା ସ୍ମୃତି ସତେଜ ହୋଇ ଉଠୁଛି । ୧୯୯୪ ମସିହାରେ ସ୍ୱାମିଜୀ ତାଙ୍କର ଡାଇରୀରୁ ୧୪୫ଟି ପ୍ରଶ୍ନର ଉତ୍ତରକୁ ବାହାର କରି ଓଡ଼ିଆରେ ପ୍ରକାଶ କରିଦେବାକୁ ଅନୁମତି ଦେଇଥିଲେ । ଏହି ପୁସ୍ତକ ହିନ୍ଦୀ ଭାଷାରେ ଛାପା ହୋଇନଥିଲା । ମୁଁ ଆଦେଶକୁ ସହର୍ଷ ପାଳନ କରି ନେଇଥିଲି । ମୋର ଯେତିକି ମନେପଡୁଛି ଗୋଟିଏ ବର୍ଷ ଭିତରେ ପ୍ରାୟ ସବୁ ପୁସ୍ତକ ବିକ୍ରୟ ହୋଇଯାଇଥିଲା । ତା'ପରେ ଅନେକ ଦିନ ବିତିଗଲା । ଲଘୁ ବେଦାନ୍ତ ପ୍ରଶ୍ନୋତ୍ତରୀ ଭଳି ଏକ ଗୁରୁତ୍ୱପୂର୍ଣ୍ଣ ପୁସ୍ତକ ଲୋକଲୋଚନ ଅଗୋଚର ହୋଇଯାଇଥିଲା ।

ଇତ୍ୟବସରରେ ଜଣେ ନୂତନ ସତସଙ୍ଗୀ (ସରୋଜ) ମୋତେ ଏହି ପୁସ୍ତକଟି ପଢିବା ପାଇଁ ମାଗିଲେ । ମୁଁ ମନା କରିଦେଲି । କାରଣ କେବଳ ଖଣ୍ଡିଏ ପୁସ୍ତକ ମୋ' ପାଖରେ ଥିଲା । ସେ ମୋତେ ବିନୟତାପୂର୍ବକ ଏହାକୁ ଗୋଟିଏ ସପ୍ତାହ ପାଇଁ ଦେବାପାଇଁ ଅନୁରୋଧ କଲେ । ପୁସ୍ତକଟି ନେଇ ଫେରାଇ ଦେଲାବେଳେ କହିଲେ ମୁଁ ସମଗ୍ର ବହିକୁ ମୋ' ଟିପାଖାତାରେ ଉତାରି ଦେଇଛି । କିନ୍ତୁ ଆପଣଙ୍କୁ ମୋର ନିବେଦନ ଏହାକୁ ଆଉଥରେ ଛପାଇ ଦିଅନ୍ତୁ, ଏହା ଲୋକଙ୍କ ପାଇଁ ଯଥେଷ୍ଟ ଉପାଦେୟ ହେବ ।

ମୁଁ ପୁଣି ଆଉ ଥରେ ପୁସ୍ତକଟି ପଢ଼ିଲି । ଯେଉଁ ପ୍ରଶ୍ନଗୁଡ଼ିକର ଉତ୍ତର ଦିଆଯାଇଛି, ତାହା ଜୀବର କଲ୍ୟାଣ ପାଇଁ ନିତାନ୍ତ ଉପଯୋଗୀ । ଅଧିକାଂଶ ସତସଙ୍ଗୀ ଏଥିରେ ଏକମତ ହେଲେ ଏବଂ କେତେ ଜଣ ସତସଙ୍ଗୀ ଏହାକୁ ପୁନଃପ୍ରକାଶ କରିବା ପାଇଁ ଆର୍ଥିକ ସହାୟତା ମଧ୍ୟ କରିନେଲେ ।

ଆଜି ମୁଁ କୋଟି କୋଟି ବାର ସ୍ୱାମିଜୀଙ୍କ କୃପାକୁ ସ୍ମରଣ କରି ତାଙ୍କର ଚରଣ ବନ୍ଦନା କରୁଛି, କାରଣ ସେ ଆମ ସମସ୍ତଙ୍କ ପାଇଁ ଅନ୍ତଃପ୍ରେରଣାର ସ୍ରୋତ ହୋଇ ଏହାର ପ୍ରକାଶନରେ ସହାୟକ ହୋଇଛନ୍ତି ଏବଂ ଜଗତର କଲ୍ୟାଣ ପାଇଁ ଆଶୀର୍ବାଦ ଦେଇ ଚାଲିଛନ୍ତି ।

**ରମେଶ**
୧୦/୧/୧୨

ଯେଉଁମାନଙ୍କ ମୁଖ୍ୟ ସହାୟତାରେ ଏହି ପୁସ୍ତକଟି ଆତ୍ମପ୍ରକାଶ କଲା ସେମାନେ ହେଲେ **ଶଶିକାନ୍ତ ତ୍ରିପାଠୀ, ସଂଗୀତା ସାହୁ, ପଦ୍ମିନୀ ସାହୁ** । ନିରଂଜନ ବୁକ୍‌ଟ୍ରଷ୍ଟ ସେମାନଙ୍କ ମହତ ସେବା ପାଇଁ ସେମାନଙ୍କ ନିକଟରେ କୃତଜ୍ଞ ।

# ଲଘୁ ବେଦାନ୍ତ ପ୍ରଶ୍ନୋତ୍ତରୀ

**ପ୍ରଶ୍ନ ୧– ମନର ମୂଳ କ'ଣ ?**

ଉତ୍ତର – ଯଦି ମନ ଉଦୟ ହେବାର ମୂଳ କାରଣକୁ ଖୋଜାଯାଏ ତେବେ ଜଣାଯିବ ଯେ ତାହା ସେହି ସତ୍ୟରୁ ହିଁ ଉଦୟ ହୋଇଛି, ଯାହାକୁ ଆତ୍ମା ବା ବ୍ରହ୍ମ କୁହାଯାଏ । କଣ ପାଣି ବିନା ଲହରୀର ପ୍ରତୀତି ହୋଇପାରେ ? ମନକୁ ଖୋଜି ଖୋଜି ଚାଲିଲେ ଦିନେ ମନ ଲୁପ୍ତ ହୋଇଯିବ । ତାହା ଲୋପ ହୋଇଗଲା ପରେ ତୁମେ ହିଁ ଶେଷରେ ରହିବ । ଲହରୀର ମୂଳକୁ ଖୋଜିଲା ପରେ କ'ଣ ଜଳ ବ୍ୟତୀତ ଆଉ କିଛି ମିଳିପାରିବ ?

ଚେତନାକୁ ଦେହ ସହିତ ଏକ ବୋଲି ମାନିନେବା ହିଁ ମନ । ତଥା ଚେତନାକୁ ଚେତନା ବୋଲି ଜାଣିବା ହିଁ ମନୋନାଶ ବା ମନୋଲୟ ।

**ପ୍ରଶ୍ନ ୨– ଧ୍ୟାନ ଦ୍ୱାରା ମନ ଅଖଣ୍ଡ ଶାନ୍ତି ପ୍ରାପ୍ତ କରିପାରିବ ?**

ଉତ୍ତର – ଧ୍ୟାନର ଶାନ୍ତିରେ ମନଲୟ ତ ସେତିକି ସମୟ ପାଇଁ ଶାନ୍ତ ହୋଇଯାଏ, କିନ୍ତୁ ତାହା ଯଥେଷ୍ଟ ନୁହେଁ । ମନକୁ ବିଚାର ଦ୍ୱାରା ନଷ୍ଟ କରିବାକୁ ହେବ ।

କିଛି ଲୋକ ସାଧାରଣ ସଂକଳ୍ପ ନେଇ ସମାଧିସ୍ଥ ହେବା ପାଇଁ ଗଲେ ଏବଂ ଦୀର୍ଘ ସମୟ ପରେ ପୁଣି ସେମାନେ ସେହି ବିଚାରରେ ଜାଗ୍ରତ ରହିଥିବାର ଦେଖାଗଲା, କାରଣ ସେତେବେଳେ ମନ ସ୍ୱରୂପତଃ ନଷ୍ଟ ହୋଇନଥିଲା ।

ମନକୁ ନଷ୍ଟ କରିବାର ସରଳ ଉପାୟ ହେଉଛି ତାକୁ ଆତ୍ମା ଠାରୁ ଟିକିଏ ହେଲେ ଅଲଗା ବୋଲି ନ ମାନିବା । ସେହି ମୁହୂର୍ତ୍ତରେ ମନ ନାହିଁ ଯେତେବେଳେ ତୁମେ ତାକୁ ଚଞ୍ଚଳ ବୋଲି କହୁଛ । ଏଇ ସତ୍ୟକୁ ଜାଣିନିଅ ଯେ, ଯେତେବେଳେ ଲହରୀ ପ୍ରତୀତ ହେଉଛି ସେତେବେଳେ ବି ତାକୁ ଜଳ ବୋଲି ଜାଣ । ବ୍ୟବହାର ହେଉଥିବା ସମୟରେ ହିଁ ମନକୁ ଅସତ୍ ରୂପ ବୋଲି ଜାଣିନିଅ । ସୁଷୁପ୍ତି ବା ସ୍ୱପ୍ନରେ ଏହି ବିଚାର ହୋଇପାରିବ ନାହିଁ । ସମସ୍ତ କାର୍ଯ୍ୟ ପ୍ରକୃତି ଅନୁସାରେ ସ୍ୱତଃ ହୋଇ ଚାଲିଥାଏ । ଏହା ଜାଣିନିଅ ଯେ ଏହାର ପ୍ରେରଣକାରୀ ମନ ଯଥାର୍ଥ ନୁହେଁ ବରଂ କାଳ୍ପନିକ, ଯାହା ଆତ୍ମାରୁ ଉତ୍ପନ୍ନ ହୋଇଛି । ଏହିପରି ମନକୁ ନଷ୍ଟ କରାଯାଇଥାଏ ।

**ପ୍ରଶ୍ନ୩– ମନ ସର୍ବଦା ଚଞ୍ଚଳ ରହୁଛି, ଏହାକୁ କିପରି ବଶ କରିବା ?**

ଉତ୍ତର – ମନର ସ୍ୱଭାବ ହେଉଛି ଚଞ୍ଚଳ ହେବା, ଅଗ୍ନି ଉଷ୍ଣ ହେଲା ପରି । ତୁମେ ମନ ନୁହଁ । ମନ ଉଦୟ ହୁଏ ଜାଗ୍ରତାବସ୍ଥାରେ ଏବଂ ଅସ୍ତ ହୁଏ ସ୍ୱପ୍ନାନ୍ତରେ । ଏହା ଅସ୍ଥାୟୀ ତଥା ଅନିତ୍ୟ, ଏକ ଦେଶୀୟ, ସେତେବେଳେ ତୁମେ ହେଉଛ ନିତ୍ୟ । ଆତ୍ମା ଠାରୁ ଭିନ୍ନ ହୋଇ କିଛି ନାହିଁ । ଆତ୍ମାରେ ଅଧିଷ୍ଠିତ ହେବା ଆବଶ୍ୟକ । ମନର ଚିନ୍ତା ଦୂର କର । ଯଦି ଏହାର ମୂଳ ତୁମେ ସ୍ରୋତକୁ ଖୋଜି ପାଇବ, ତେବେ ଏହା ସ୍ପଷ୍ଟ ହୋଇଯିବ ଯେ ମନ ହେଉଛି ଲହରୀମାଳା ଭଳି ସତ୍ତାଶୂନ୍ୟ ପ୍ରତୀତି ମାତ୍ର । ଆତ୍ମା ହିଁ ଅବଶେଷରେ ରହିଥିବ ।

**ପ୍ରଶ୍ନ ୪– କ'ଣ ମନକୁ ବଶ କରିବା ଅନାବଶ୍ୟକ ?**

ଉତ୍ତର – ଆତ୍ମାର ଅନୁଭୂତି ହୋଇଗଲା ପରେ ମନକୁ ନିୟନ୍ତ୍ରଣ କରିବା, ନଷ୍ଟ କରିବା, ଶାନ୍ତ କରିବା ପାଇଁ ଆଉ ମନ ନଥିବ । ମନ ନଷ୍ଟ ହେଲା ପରେ ହିଁ ଆତ୍ମା ପ୍ରକାଶିତ ହେବ । ଯେଉଁ ଲୋକ 'ମୁଁ ଆତ୍ମା' ଏହିଭଳି ସାକ୍ଷାତ୍କାର କରିନେଇଛି, ତାଙ୍କର ମନ ସକ୍ରିୟ ହେଉ ବା ନିଷ୍କ୍ରିୟ, ତାଙ୍କ ପାଇଁ ଆତ୍ମା ହିଁ ରହିଥାଏ । କାରଣ ମନ, ଦେହ, ପ୍ରାଣ ଇନ୍ଦ୍ରିୟ ଆତ୍ମା ଠାରୁ ପୃଥକ ନୁହେଁ । ସେମାନେ ଆତ୍ମାରେ ହିଁ ଉଦୟ ହୁଅନ୍ତି ଏବଂ ଆତ୍ମାରେ ହିଁ ଅସ୍ତ ହୁଅନ୍ତି, ଜଳରୁ ବରଫ ହେଲା ଭଳି । ଆତ୍ମା ଠାରୁ ପୃଥକ ହେଲା ଭଳି ସେମାନଙ୍କର କୌଣସି ସତ୍ତା ନାହିଁ । କେବଳ ଅଖଣ୍ଡ, ସର୍ବରୂପ ଆତ୍ମାର ଚିନ୍ତନ କର ଅନ୍ୟ କିଛି 'ଇଏ–ସିଏ' ଦେଖନାହିଁ । ଆତ୍ମାର ବୋଧ ରଖ, ଯାହା ହେଉଛି ସାର ଏବଂ ସତ୍ୟ । ଏଇ ମନର ମିଥ୍ୟା ବିଚାରଗୁଡ଼ିକ ପାଇଁ ଚିନ୍ତା କାହିଁକି ? କ'ଣ ଲହରୀଗୁଡ଼ିକ ଜଳରେ କମ୍ପନ ସୃଷ୍ଟି କରିପାରନ୍ତି ? ବାସ୍, ସେହିପରି ମିଥ୍ୟା ମନ ଆତ୍ମାକୁ ପ୍ରଭାବିତ କରିପାରିବ ନାହିଁ ।

ଯେମିତି ସୂର୍ଯ୍ୟଙ୍କ ଆଲୋକ ଚନ୍ଦ୍ର ଗ୍ରହଣ କରି ପୁଣି ରାତିରେ ପୃଥିବୀବାସୀଙ୍କୁ ଆଲୋକିତ କରେ । ଯେତେବେଳେ ଚନ୍ଦ୍ର ପ୍ରତିବିମ୍ବିତ ନ ହେଉଥିବା ପୃଥିବୀ ଭଳି ହୋଇଯାଏ, ସେତେବେଳେ ସେ ପୃଥିବୀକୁ ଆଲୋକିତ କରିପାରେ ନାହିଁ । ସେହିପରି ଏହି ଆତ୍ମା ହୃଦୟର ଆଲୋକ ମସ୍ତିଷ୍କ ଉପରେ ପଡେ, ଯାହା ମନର ସ୍ଥାନ । ପୁଣି ମନ ଦ୍ୱାରା ହିଁ ଜଗତ ଦେଖାଯାଏ । ସୁଷୁପ୍ତି, ସମାଧିରେ ମନ ଆତ୍ମା ନିମଗ୍ନ ରହୁଥିବା ବାହ୍ୟ ଜଗତକୁ ପ୍ରକାଶିତ କରିପାରେ ନାହିଁ । ଯେତେବେଳେ ମନ ସଂସାର ଆଡକୁ ହୁଏ, ସେତେବେଳେ ଏହା ବିଷୟ ଜଗତକୁ ପ୍ରକାଶିତ କରିପାରେ । ଯଦି ମନକୁ ଧ୍ୟାନ, ସମାଧି ଇତ୍ୟାଦି ସାଧନଗୁଡ଼ିକ ଦ୍ୱାରା ଅନ୍ତର୍ମୁଖୀ କରି ନିଆଯାଏ, ସେତେବେଳେ ଜଗତ ଲୋପ ହୋଇଯାଏ । ତା'ପରେ କେବଳ

ସାକ୍ଷୀ ଆତ୍ମା ହିଁ ଅବଶେଷରେ ରହିଥାନ୍ତି । ଏହା ଆମ ସମସ୍ତଙ୍କର ପ୍ରତିଦିନର ଅନୁଭବ ଯେ ମନ ସୃଷ୍ଟି ହେଲେ ଆମେ ତାକୁ ଦେଖୁଛୁ, ମନର ଚଞ୍ଚଳତା, ଶାନ୍ତ ଅବସ୍ଥା, ଶୋକ, ମୋହ, ସୁଖୀ–ଦୁଃଖୀ ଅବସ୍ଥାକୁ ଆମେ ଜାଣୁଛୁ । ଆମ ବିନା ତାହାର ସତ୍ତା ନାହିଁ । ତା ବିନା ବି ଆମେ ଅଛୁ । ମନ ହେଉଛି ଆତ୍ମ ସମୁଦ୍ରର ଲହରୀ । ଆତ୍ମ ଅଧିଷ୍ଠାନର ଜ୍ଞାନ ହୋଇଗଲା ପରେ ମନ ନାମକ କୌଣସି ପୃଥକ ସତ୍ତା ରହେନାହିଁ । ମନ ହିଁ ନାହିଁ । ଆତ୍ମନିଷ୍ଠ ଜ୍ଞାନୀ ଲୋକମାନଙ୍କ ପାଇଁ ମନର କୌଣସି ଚିନ୍ତା ରହେନାହିଁ । ମନର ସାକ୍ଷୀକୁ ଜାଣି ନିଆଯାଉ ଯେ ସେ କିଏ ? ତେବେ ଯାଇ ମନର ଚିନ୍ତା ଶେଷ ହୋଇଯିବ । ମନର ପ୍ରକାଶକ ଆତ୍ମା ହିଁ ହେଉଛି ମୁଁ – ଏହି ବିଚାର ଜାଗ୍ରତ ହେଲା ପରେ ମନ ପ୍ରଭାବିତ କରିପାରିବ ନାହିଁ । ମନ ହେଉଛି ଦୃଶ୍ୟ, ତୁମେ ତା'ଠାରୁ ଅଲଗା, ତାହାର ଅବସ୍ଥାକୁ ଜାଣିବାବାଲା, ତୁମେ ମନ ନୁହଁ ।

ଯଦି ମନର ଅନ୍ୱେଷଣ ଯେ କରିବା ଏହା କ'ଣ, ତେବେ ସଂକଳ୍ପ ସବୁ ପଛକୁ ଚାଲିଯିବେ ତଥା ସାଧକ ଜାଣି ନେବ ଯେ ସେସବୁ ଆତ୍ମାରୁ ଉଦୟ ହେଉଛି । ସେହି ସଂକଳ୍ପ ସବୁକୁ ଆମେ ମନ କହୁଛୁ । ଯଦି ବ୍ୟକ୍ତିର ଏହି ଅନୁଭୂତି ହୋଇଯିବ ଯେ ସଂକଳ୍ପ ଆତ୍ମାରୁ ଉଦୟ ହୁଏ ଏବଂ ମୂଳ ସ୍ରୋତରେ ରହିଥାଏ, ତେବେ ମନ ଲୋପ ହୋଇଯିବ । ଯେ ପର୍ଯ୍ୟନ୍ତ ମନର ମୂଳସ୍ରୋତ ସମ୍ବନ୍ଧରେ ବିଚାର କରାନଯାଇ, କେବଳ ଧ୍ୟାନ, ସମାଧି ଦ୍ୱାରା ମନୋନାଶ ପାଇଁ ପ୍ରଯତ୍ନ କରାଯାଉଥିବ ସେ ପର୍ଯ୍ୟନ୍ତ ଏହି ମନ ତୁମର ବାସ୍ତବ ସ୍ୱରୂପ ଦର୍ଶନ ପାଇଁ ପ୍ରତିବନ୍ଧକ ହେଉଥିବ । ଅହଂକାର ତଥା ମନ ଏକ । ଅହଂକାର ହିଁ ହେଉଛି ମୂଳ ସଂକଳ୍ପ, ଯେଉଁଠୁ ଅନ୍ୟ ସବୁ ସଂକଳ୍ପ ଉତ୍ପନ୍ନ ହୋଇଥାଏ ।

ମନକୁ ଦେଖିବା ଦ୍ୱାରା ଅଥବା ମନକୁ ଆତ୍ମା ରୂପରେ ଜାଣିବା ଦ୍ୱାରା ମନର ଅଭାବ ସିଦ୍ଧ ହୋଇଯାଏ । ମନନାଶ ପାଇଁ ଧ୍ୟାନ, ସମାଧି, ପ୍ରାଣାୟାମ ଇତ୍ୟାଦି ଅନ୍ତିମ ସାଧନ ନୁହେଁ । କେବଳ ଆତ୍ମବିଚାର ହିଁ ଯଥେଷ୍ଟ ।

ସାଧାରଣତଃ ସାଧକ ପ୍ରଶ୍ନ କରିଥାନ୍ତି ଯେ ମନ ଉପରେ ନିୟନ୍ତ୍ରଣ କେମିତି କରିବୁ ? ମୁଁ ସେମାନଙ୍କୁ କହୁଛି "ତୁମେ ମୋତେ ମନକୁ ଦେଖାଇଦିଅ ମୁଁ ତାକୁ ବଶ କରାଇଦେବି, ତାପରେ ତୁମକୁ ମନକୁ ନିୟନ୍ତ୍ରଣରେ ରଖିବା ବିଚାର ସମ୍ବନ୍ଧରେ କୁହାଯିବ ।"

ମନ ହେଉଛି ସଂକଳ୍ପସମୂହ । ଏହାର ପ୍ରଶମନ କେଉଁ ମନର ସଂକଳ୍ପ ଦ୍ୱାରା କେମିତି ହୋଇପାରିବ ? ମନ ରୋକିବାପାଇଁ ନୂଆ ନୂଆ ସାଧନ ଦ୍ୱାରା ମନର

ହିଁ ବିସ୍ତାର ହେବ । ଚଞ୍ଚଳତା, ବିକ୍ଷେପ ହିଁ ବଢ଼ିବ । ଅସୁବିଧା ହେଉଛି ଏୟା ଯେ ମନ ଦ୍ୱାରା ମନକୁ ମାରିବାର ପ୍ରୟାସ କରିବା ହିଁ ନିରର୍ଥକ । ଯୋଗ ଚିତ୍ତବୃତ୍ତି ନିରୋଧ ଉପରେ ପ୍ରାଧାନ୍ୟ ଦେଉଛି କିନ୍ତୁ ମୋ ମତରେ ଆତ୍ମବିଚାର ହିଁ ହେଉଛି ଏକମାତ୍ର ମନ ଶାନ୍ତିର ଅନ୍ତିମ ଉପାୟ ।

ଚିତ୍ତବୃତ୍ତି ନିରୋଧ ସୁଷୁପ୍ତି, ପ୍ରାଣାୟାମ, ସମାଧି ଅଥବା ଆହାର ତ୍ୟାଗ ଦ୍ୱାରା ହୋଇଥାଏ । କିନ୍ତୁ ଯେଉଁ ଯେଉଁ କାରଣରୁ ସାଧନର ତ୍ୟାଗ କରିବ, ସେହି ସେହି ବିଚାର, ଚଞ୍ଚଳତା ଗୁଡ଼ିକର ପୁନରାଗମନ ହୋଇଯିବ । ତେବେ ଏପରି କଷ୍ଟପ୍ରଦ ସାଧନାଗୁଡ଼ିକ ଦ୍ୱାରା କ୍ଷଣିକ ମନ ନିରୋଧ କରିବାରେ ଲାଭ କ'ଣ ? ତେଣୁ ମନର ନିରୋଧ ଉପାଦେୟ ନୁହେଁ, କାରଣ ଏହି ଉପାୟରେ ସେ ସ୍ଥାୟୀ ଭାବରେ ଶାନ୍ତ ହୁଏ ନାହିଁ ।

ମନର ସ୍ଥାୟୀ ଶାନ୍ତି ପାଇଁ ଦୁଃଖର କାରଣକୁ ଖୋଜିବାକୁ ହେବ । ଦୁଃଖର କାରଣ ହେଉଛି ପଦାର୍ଥଗୁଡ଼ିକୁ ପାଇବାର ଇଚ୍ଛା । ଯଦି ପଦାର୍ଥର ଅଭାବ ହୋଇଯାଏ, ତେବେ ତତ୍‌କ୍ଷଣାତ୍ ସଂପୂର୍ଣ୍ଣ ଦୁଃଖର ନାଶ ହୋଇଯାଏ । ମାତ୍ର ଏହି ପଦାର୍ଥଗୁଡ଼ିକର ଲୋପ ହେବ କିପରି ? ପଦାର୍ଥ ହେଉଛି ମନର ସୃଷ୍ଟି, ବାସ୍ତବରେ ଏହାର ଅସ୍ତିତ୍ୱ ହିଁ ନାହିଁ । ଯେତେବେଳେ କୌଣସି ଦ୍ୱୈତ ହିଁ ନାହିଁ, ସେତେବେଳେ ତୁମର ଶାନ୍ତିକୁ ଭଗ୍ନ କରିବା ଭଳି କୌଣସି ବିଚାର ହିଁ ଉତ୍ପନ୍ନ ହେବ ନାହିଁ । ଏହା ହେଉଛି ଆତ୍ମୋପଲବ୍‌ଧି । ଆତ୍ମା ହେଉଛି ନିତ୍ୟ ତଥା ସେ' ହିଁ ତୁମେ । ମନର ମୂଳ ହେଉଛି ଅହଂଭାବ ଏବଂ ଅହଂଭାବର ମୂଳ ହେଉଛି ଶୁଦ୍ଧ ଅହଂଚେତନା । ତୁମକୁ ଜଣା ଅଛି ଯେ ତୁମେ ମନ ନୁହଁ । ସବୁ ବାସନା ମନର ଅନ୍ତର୍ଗତ, ଏହି ଜ୍ଞାନ, ବାସନାକୁ ନିୟନ୍ତ୍ରଣ କରିବାରେ ସହାୟକ ।

ମନକୁ ଆତ୍ମା ଠାରୁ ପୃଥକ୍ ମାନିନେବା ହିଁ ମାୟା । ମନର ଅସ୍ତିତ୍ୱ ସତ୍ୟର ଅନ୍ତର୍ଗତ, ସତ୍ୟ ଠାରୁ ଅଲଗା ନୁହେଁ । ଏହି ଜ୍ଞାନ ହିଁ ମାୟାର ନିବୃତ୍ତି ।

ତୁମେ ମନ ନୁହଁ । ତୁମେ ମନୋଦଶାକୁ ବୁଝି, ଜାଣି ମୋ ଆଗରେ ପ୍ରଶ୍ନ କରୁଛ ଯେ ମନକୁ କିପରି ବଶୀଭୂତ କରିବୁ ? ଯଦି ତାହା ହୁଏ, ତେବେ ତା'ପଉରେ ନିୟନ୍ତ୍ରଣ ହେବ । ଖୋଜିବା ଦ୍ୱାରା ଏହି ସତ୍ୟକୁ ଜାଣିନେଲୁ ଯେ, ସେ ନାହିଁ, କେବଳ ମୁଁ ସାକ୍ଷୀ ଆତ୍ମା ହିଁ ଅଛି । ତୁମେ ମନ ନୁହଁ, ମନର ଅତୀତ । ମନର ସାକ୍ଷୀ । ଏହି ସାକ୍ଷୀ ହେବାର ଜ୍ଞାନ ବି ଆଭାସର କାର୍ଯ୍ୟ । ମନ ହିଁ ଆଭାସ । ଏହିପରି ଜ୍ଞାନ ଦ୍ୱାରା ହିଁ ମନ ସାଧ ।

**ପ୍ରଶ୍ନ ୫– ତୁରୀୟ କଣ ?**

**ଉତ୍ତର –** କେବଳ ଜାଗ୍ରତ, ସ୍ୱପ୍ନ ତଥା ସୁଷୁପ୍ତି ଏଇ ତିନୋଟି ଅବସ୍ଥା ଥାଏ । ଅଲଗା ତୁରୀୟ ବୋଲି କୌଣସି ଚତୁର୍ଥାବସ୍ଥା ନାହିଁ । ଏହା ସେହି ତିନୋଟିର ଆଧାର । କିନ୍ତୁ ଲୋକେ ତାହାକୁ ସହଜରେ ବୁଝିପାରନ୍ତି ନାହିଁ । ସେଥିପାଇଁ ଏହାକୁ ଚତୁର୍ଥ ଅବସ୍ଥା କହିଥାନ୍ତି । ବସ୍ତୁତଃ ଏହା କୌଣସି ଅବସ୍ଥା ଠାରୁ ଅଲଗା ନୁହେଁ । ତୁରୀୟ ହିଁ ଜାଗ୍ରତ, ସ୍ୱପ୍ନ ତଥା ସୁଷୁପ୍ତିର ରୂପ । ଏହା ତୁମର ବାସ୍ତବ ଅସ୍ତିତ୍ୱ । ସେହି ଆତ୍ମା ଉପରେ ତିନୋଟି ଅବସ୍ଥା ପାଣି ଉପରେ ଲହରୀ ଭଳି ଉଦୟ ହୋଇ ଲୀନ ହୋଇଯାନ୍ତି । ଅର୍ଥାତ ଉଦୟ ଅସ୍ତ ଧର୍ମ, ବୃତ୍ତି, ଅବସ୍ଥା ଇତ୍ୟାଦି ହେଉଛି ମିଥ୍ୟା । ଆତ୍ମା ବର୍ତ୍ତମାନ ଏବଂ ଏବେ ଏଇଠି ଅଛି । କେବଳ ତାହା ହିଁ ସତ୍ୟ ଏବଂ ତାହା ହିଁ ତୁମେ । ତୁରୀୟ ହେଉଛି କେବଳ ଆତ୍ମାର ଅନ୍ୟନାମ ।

**ପ୍ରଶ୍ନ ୬– ଧ୍ୟାନ କାହାର କରିବ ?**

**ଉତ୍ତର –** "ମୁଁ କିଏ" ତାହାର ଅନୁସନ୍ଧାନ ଆବଶ୍ୟକ । ଗହନ ନିଦ୍ରା ତଥା ଜାଗୃତି ଅବସ୍ଥାରେ ଯାହାର ଅସ୍ତିତ୍ୱ ଥାଏ ତାହା ଏକ । ଧ୍ୟାନ ପୂର୍ବରୁ ଧ୍ୟାତା କିଏ ? ପ୍ରଥମେ ମନକୁ ଏହି ପ୍ରଶ୍ନ ପଚାର । ବାସ, ଧ୍ୟାତା ହୋଇ ରହ । ଧ୍ୟାନର ଆବଶ୍ୟକତା ନାହିଁ । କାରଣ ଦେଖାଯାଇଥିବା ଅନ୍ୟ ବସ୍ତୁର ହିଁ ଧ୍ୟାନ କରାଯାଇପାରେ । ଧ୍ୟାତାର ଧ୍ୟାନ ହୋଇପାରିବ ନାହିଁ । ଯାହା ଧ୍ୟେୟ ହେବ ତାହା ଧ୍ୟାତା ଠାରୁ ଭିନ୍ନ, ପରିଛିନ୍ନ ବସ୍ତୁ ହୋଇଥିବାରୁ ତାହା ନାଶବାନ୍ ହିଁ ହେବ ।

ତୁମର ନିଜ ସ୍ୱଭାବ ହିଁ ହେଉଛି ଧ୍ୟାନ ଅର୍ଥାତ୍ ସମାଧି । ବାସ୍ତବରେ ଧ୍ୟାନ ହେଉଛି ଆତ୍ମନିଷ୍ଠା । ଆତ୍ମନିଷ୍ଠତା ହେଉଛି ତୁମର ବାସ୍ତବ ସ୍ୱରୂପ । ବିନା ଧ୍ୟାନରେ ବି ତୁମେ ହିଁ ଆତ୍ମା । ତେଣୁ ଆତ୍ମା ହୋଇ ରହ ଅନ୍ୟ କିଛି ହେବା ପାଇଁ ଇଚ୍ଛା କରନାହିଁ ।

ଧ୍ୟାନ ଅର୍ଥ ହେଉଛି ଗୋଟିଏ ସଂକଳ୍ପ ଉପରେ ଦୃଢ ହେବା । ଏହି ଗୋଟିଏ ସଂକଳ୍ପ ଅନ୍ୟ ସଂକଳ୍ପ ଗୁଡ଼ିକୁ ଦୂରରେ ରଖେ । ମନର ଚଞ୍ଚଳତା ହିଁ ତାହାର ଦୁର୍ବଳତାର ପରିଚାୟକ । ଧ୍ୟାନ କଲେ ମନ ଗୋଟିଏ ଲକ୍ଷ୍ୟ ଉପରେ ସବଳ ହୋଇ କାର୍ଯ୍ୟ କରିଥାଏ । ଧ୍ୟାନ କ'ଣ ? ଜାଗ୍ରତ ହୋଇ ସ୍ରୋତରେ ବିଲୀନ ହେବା । ତାପରେ ମୃତ୍ୟୁ, ମୂର୍ଚ୍ଛାର ଭୟ ଚାଲିଯିବ । କାରଣ ତୁମେ ସଚେତନ ରହି ମୂଳ ସ୍ରୋତରେ ବିଲୀନ ହେବାକୁ ଅସମର୍ଥ ।

ଧ୍ୟାନ ହିଁ ହେଉଛି ତୁମର ବାସ୍ତବ ସ୍ୱରୂପ । କାରଣ ତୁମକୁ ଅନ୍ୟ ସଂକଳ୍ପ ବିଚଳିତ କରୁଛି, ସେଥିପାଇଁ ତୁମେ ତାହାକୁ ଧ୍ୟାନ କହୁଛ । ଯେତେବେଳେ ଏହି ବିଚାର

ନଷ୍ଟ ହୋଇଯାଏ ତୁମେ ଏକୁଟିଆ ରହିଥାଅ ଅର୍ଥାତ୍ ସଂକଳ୍ପ ଶୂନ୍ୟ ହୋଇ ଧ୍ୟାନର ଅବସ୍ଥାରେ ରହିଥାଅ ଏବଂ ଏହା ହେଉଛି ତୁମର ନିଜ ସ୍ୱରୂପ । ଯାହାକୁ ତୁମେ ବର୍ତ୍ତମାନ ଅନ୍ୟ ବିଚାରଗୁଡ଼ିକ ଠାରୁ ଦୂରରେ ରହି ପ୍ରାପ୍ତ କରିବାକୁ ଚାହୁଁଛ । ଅନ୍ୟ ସଂକଳ୍ପଗୁଡ଼ିକୁ ଦୂରରେ ରଖିବାକୁ ହିଁ ଧ୍ୟାନ କୁହାଯାଏ ।

**ପ୍ରଶ୍ନ ୭– ମୁଁ ଧ୍ୟାନ କରୁଛି କିନ୍ତୁ ସଫଳ ହେଉନାହିଁ । ମୋର କ'ଣ କରିବା ଉଚିତ ?**

**ଉତ୍ତର –** ତୁମେ କହୁଛ "ମୁଁ ଧ୍ୟାନ କରୁଛି ମାତ୍ର ସଫଳ ହେଉନାହିଁ" – ତୁମର ଏହି କଥାରୁ ପ୍ରମାଣିତ ହେଉଛି ଯେ ତୁମେ ହେଉଛ ଧ୍ୟାନ ପାଇଁ ଇଚ୍ଛା କରୁଥିବା, ଚେଷ୍ଟା କରୁଥିବା ଆତ୍ମା, ଜଡ଼ ଶରୀର ନୁହଁ । କାରଣ ମୁଁ ହେଉଛି ସର୍ବଦା ଆତ୍ମା । ତେବେ ଅସଫଳ ହେଉଛି କାହିଁକି ? କ'ଣ ଆତ୍ମା ଦୁଇଟା, ଯେ ଗୋଟିଏ ଆତ୍ମା ଅନ୍ୟ ଆତ୍ମାର ଧ୍ୟାନ କରିବ ? ଅସଫଳ ହେଉଥିବା, ସମୟରେ ଆତ୍ମା ସେହି ଦୁଇଟି ଭିତରୁ କେଉଁଟି ? ଦୁଇଟି ଆତ୍ମା ତ ହୋଇପାରିବ ନାହିଁ । କେବଳ ଆତ୍ମା ଗୋଟିଏ ଏବଂ ତାହା ହେଉଛ ତୁମେ । ତୁମେ ନିଜର ଧ୍ୟାନ କରିବାର ଆବଶ୍ୟକତା ନାହିଁ । ଧ୍ୟାନର ପ୍ରୟାସ କାହିଁକି କରାଯାଉଛି ? ଆତ୍ମାସ୍ୱରୂପ ହୋଇଥିବାରୁ ମନୁଷ୍ୟ ସର୍ବଦା ସାକ୍ଷାତ୍କାରଯୁକ୍ତ । କେବଳ ମୁଁ ଅଚଳ, ମୁଁ ବଦ୍ଧ, ମୁଁ ମନୁଷ୍ୟ, ମୁଁ ମନ ଏହିଭଳି ଅନାତ୍ମ ବିଚାର ଗୁଡ଼ିକ ଠାରୁ ମୁକ୍ତ ହେବାକୁ ପଡ଼ିବ ।

**ପ୍ରଶ୍ନ ୮– ଯୋଗ ଏବଂ ଜ୍ଞାନ ମଧ୍ୟରେ କେଉଁ ମାର୍ଗ ଶ୍ରେଷ୍ଠ ?**

**ଉତ୍ତର –** ଜ୍ଞାନୋପଲବ୍ଧି ପରେ ଯୋଗ ସାଧନର ଆବଶ୍ୟକତା ନାହିଁ । ଯୋଗ କ'ଣ ? ଯୋଗର ଅର୍ଥ ହେଉଛି ଯୁକ୍ତ ହେବା । ଯେତେବେଳେ ବିୟୋଗ ହୁଏ, ସେତେବେଳେ ଯୋଗ ସମ୍ଭବ । ବ୍ୟକ୍ତି ବର୍ତ୍ତମାନ ବିୟୋଗର ଭ୍ରାନ୍ତିରେ ଆକ୍ରାନ୍ତ । ସେହି ଭ୍ରାନ୍ତିର ନିବାରଣ ପାଇଁ ଅପେକ୍ଷା ରହିଛ । ସେହି ଭ୍ରାନ୍ତିର ନିବୃତ୍ତି ମାର୍ଗକୁ କୌଣସି କୌଣସି ଯୋଗର ସଞ୍ଜ୍ଞା ଦିଆଯାଇଛି, ଯଥା – କର୍ମଯୋଗ, ଭକ୍ତିଯୋଗ, ଜ୍ଞାନଯୋଗ, ଅଷ୍ଟାଙ୍ଗଯୋଗ ଇତ୍ୟାଦି ।

ଏହା ବ୍ୟକ୍ତିର ପୂର୍ବଜନ୍ମର ସଂସ୍କାରଗୁଡ଼ିକ ଉପରେ ନିର୍ଭର କରିଥାଏ ଏବଂ ଜଣେ ଲୋକ ପାଇଁ ଯୋଗ ସରଳ ହୋଇଥିଲା ବେଳେ ଅନ୍ୟ ଲୋକ ପାଇଁ ଜ୍ଞାନ ସରଳ ହୋଇଥାଏ । ଏହା ସମ୍ବନ୍ଧରେ କାହାକୁ ବି ଅନ୍ତିମ ବୋଲି କୁହାଯାଇ ପାରିବ ନାହିଁ ।

ଜ୍ଞାନର ଅଭ୍ୟାସ ଦ୍ୱାରା ସାଧକ ସିଧା ଆତ୍ମକେନ୍ଦ୍ରରେ ଉପସ୍ଥିତ ହୋଇଯାଏ । ଯୋଗମାର୍ଗ ମନକୁ ଏକାଗ୍ର କରିବା ବ୍ୟତୀତ ଆଉ କ'ଣ ହୋଇପାରେ ? କୌଣସି

ସାଧନର ଅଭ୍ୟାସ କର ବା ନକର ତୁମେ ନିଜର ସହଜ ବସ୍ତୁ ଆତ୍ମାରେ ହିଁ ରହିଛ । କୌଣସି ସତ୍ୟବସ୍ତୁକୁ ପାଇବା ପାଇଁ ଅଭ୍ୟାସ କରୁନାହିଁ, ଅନ୍ୟ ସଂସ୍କାରଗୁଡ଼ିକୁ ନଷ୍ଟ କରିବା ପାଇଁ ହେଉଛି । ଆତ୍ମବିଚାର ହିଁ ଯଥେଷ୍ଟ ।

ଅନ୍ୟ ସାଧନ ସେହିମାନଙ୍କ ପାଇଁ ହେଉଛି, ଯେଉଁମାନେ ଆତ୍ମାକୁ ମୁଁ ଭାବରେ ସ୍ୱୀକାର କରିବା ପାଇଁ ଯୋଗ୍ୟ ନୁହଁନ୍ତି । ଅହଂ ବ୍ରହ୍ମାସ୍ମି । ଶିବୋଽହଂ, ସୋଽହଂର ଜପ ବା ନିଷ୍ଠା, ବୃତ୍ତି ପାଇଁ ବି କୌଣସି କର୍ତ୍ତାର ଆବଶ୍ୟକତା ରହିଛି । ସେ କିଏ ? ସେ 'ମୁଁ' 'ଆତ୍ମା' । ସେଥିପାଇଁ ସଦ୍‌ଗୁରୁଙ୍କ ଦ୍ୱାରା ସ୍ୱରୂପ ନିଷ୍ଠାକୁ ପ୍ରାପ୍ତ ହେବା ହିଁ ସାଧନ । ସାକ୍ଷାତ୍ ଆତ୍ମାର ଅନୁଭବ ଦିଗରେ ଆସୁଥିବା ପ୍ରତିବନ୍ଧକକୁ ହଟାଇବା ପାଇଁ ସମସ୍ତ ସାଧନା ହୋଇଥାଏ । ଆତ୍ମନିଷ୍ଠା ଜାଗ୍ରତ ହୋଇଗଲା ପରେ ହଠଯୋଗର କଠିନ ସାଧନାଗୁଡ଼ିକୁ କରିବା କ'ଣ ଆବଶ୍ୟକ ? କିଛି ନାହିଁ । ନିଶ୍ଚଳ ଭାବରେ ବସିରହିବାର ନାମ ହେଉଛି ଆସନ । ଆତ୍ମା ହିଁ ନିଶ୍ଚଳ ଭାବରେ ଥାଏ, ଅନ୍ୟ କେହି ରହିପାରିବେ ନାହିଁ । ଏହି ଆପଣାର ସ୍ୱରୂପ ହିଁ ହେଉଛି ନିଶ୍ଚଳ ଆସନ ।

**ପ୍ରଶ୍ନ ୯– ସଦ୍‌ଗୁରୁଙ୍କୁ କ'ଣ ଦକ୍ଷିଣା ଦେବା ଉଚିତ ?**

**ଉତ୍ତର –** ତୁମେ ସର୍ବଦା ଶାଶ୍ୱତ, ନିରନ୍ତର, ପରମାନନ୍ଦ, ଆତ୍ମବାନ ହୋଇ ରହ । ସେଥିରୁ କେବେ ହେଲେ ହଟିଯାଇ ଅନ୍ୟ ମାର୍ଗକୁ ଆଶ୍ରୟ ନ କରିବା ହିଁ ସଦ୍‌ଗୁରୁଙ୍କ ପ୍ରତି ପ୍ରକୃତ ସେବା, ଭେଟି । ଦକ୍ଷିଣା ଦେବା ନୁହେଁ ।

ସଦ୍‌ଗୁରୁ ଯଦି ପ୍ରତ୍ୟେକ ସଂସାରୀ ଲୋକ ଠାରୁ ଭେଟି ସ୍ୱୀକାର କରିଚାଲନ୍ତି, ତାଙ୍କୁ ସେହି ପ୍ରାର୍ଥନାକାରୀ ଜିଜ୍ଞାସୁଙ୍କ ଆଗରେ ନଇଁଯିବାକୁ ପଡ଼ିବ । ସେ ସତ୍ୟକୁ ସ୍ପଷ୍ଟ ଭାବରେ କହିପାରିବେ ନାହିଁ । ସନ୍ଥମାନଙ୍କୁ ଭେଟିଦେବା ହେଉଛି ମାଛକୁ ମାଂସ ଖୁଆଇବା ଭଳି । କ'ଣ ମାଛ ମାରୁଥିବା ଲୋକ, ଛେଳି ମାରୁଥିବା ଲୋକ, କୁକୁଡା ମାରୁଥିବା ଲୋକ, ଗୋହତ୍ୟାକାରୀ ମାଛ, ଛେଳି, କୁକୁଡା, ଗାଈକୁ ଭୋଜନ କରିବା ପାଇଁ ଇଚ୍ଛୁକ ହୋଇଥାନ୍ତି ନା ନିଜର ଭୋଜନ ତିଆରି କରିବା ପାଇଁ ସେମାନଙ୍କୁ ଖୁଆଇଥାନ୍ତି ।

**ପ୍ରଶ୍ନ ୧୦– ସବୁ ସିଦ୍ଧିଗୁଡ଼ିକ ଯଦି ବନ୍ଧନ ଭଳି, ତେବେ ତା' ପାଇଁ କାହିଁକି ଇଚ୍ଛା କରାଯାଏ ?**

**ଉତ୍ତର –** ଯେଉଁମାନଙ୍କର ଦେହ ଦୃଷ୍ଟି ରହିଛି ଏବଂ ଜଗତ ପ୍ରତି ସୁଖ, ତଥା ସତ୍ୟ ଦୃଷ୍ଟି ରହିଛି, ସେମାନେ ହିଁ ସିଦ୍ଧି ପାଇଁ କାମନା କରିଥାନ୍ତି । ଜଣେ ଆତ୍ମଜ୍ଞାନୀ ଅନ୍ତଃକରଣକୁ ମିଥ୍ୟା ବୋଲି ନିର୍ଣ୍ଣୟ କରି ନେଇଥିବାରୁ ଅନ୍ତଃକରଣ ଦ୍ୱାରା ପ୍ରାପ୍ତ

ସିଦ୍ଧିଗୁଡ଼ିକୁ ବି ମିଥ୍ୟା ବୋଲି ଜାଣି ସେଗୁଡ଼ିକୁ ପାଇବାର ସଂକଳ୍ପ ବି କରନ୍ତି ନାହିଁ । ସିଦ୍ଧିର ଆନନ୍ଦ କେବଳ ପ୍ରଦର୍ଶନ ପାଇଁ ହୋଇଥାଏ । ପ୍ରଦର୍ଶନ କରିବା ପାଇଁ ଦ୍ୱୈତଭାବ ନିହାତି ଆବଶ୍ୟକ । ଯେଉଁଠି ଦ୍ୱୈତ ଭାବ ରହିଛି, ସେଇଠି ମୋକ୍ଷ କାହିଁ ?

ସିଦ୍ଧିଗୁଡ଼ିକ ପାଇଁ ଇଚ୍ଛୁକ, ଚମତ୍କାରିତା ପାଇଁ ଇଚ୍ଛୁକ ବ୍ୟକ୍ତି ଜ୍ଞାନ ପାଇବାରେ ସନ୍ତୁଷ୍ଟ ହୁଅନ୍ତି ନାହିଁ । ସେମାନେ ଆଉ କିଛି ହେବାକୁ ଚାହାନ୍ତି । ବର୍ତ୍ତମାନ ଠାରୁ ଭିନ୍ନ ଯାହା ବି କିଛି ପ୍ରାପ୍ତ ହେବ, ତାହା ସତ୍ୟ ହେବ ନାହିଁ । ସତ୍ୟ ଆଜି, ଏଇଠି ଏବଂ ତୁମ ରୂପରେ ବିଦ୍ୟମାନ ଅଛି । କିନ୍ତୁ ସିଦ୍ଧି ପାଇଁ ଇଚ୍ଛୁକ ଲୋକ ଜ୍ଞାନ ଏବଂ ପରମାନନ୍ଦକୁ ଉପେକ୍ଷା କରି ଦେଇଥାନ୍ତି । ସେହି କାରଣରୁ କେତେକ ସାଧକ ରାଜମାର୍ଗକୁ ଛାଡି ସିଦ୍ଧି ଭଳି ପାଦଚଲା ସଂକୁଚିତ ମାର୍ଗରେ ପଶି ବାଟ ଭୁଲିଯାନ୍ତି, ଯଦ୍ଦ୍ୱାରା ସେମାନେ ପଥଭ୍ରଷ୍ଟ ହୋଇଯାନ୍ତି ।

ଜ୍ଞାନୀ ସିଦ୍ଧିଗୁଡ଼ିକ ପାଇଁ ଟିକିଏ ହେଲେ ବି ବିଚାର କରନ୍ତି ନାହିଁ । ସାଧକ ପ୍ରଥମେ ଜ୍ଞାନ ପ୍ରାପ୍ତି କରିବା ଉଚିତ । କୋଟିଏ କର୍ମ ଛାଡିଦେଇ ଯଦି ସିଦ୍ଧିର ଆବଶ୍ୟକତା ପଡୁଥାଏ ତେବେ ସାଧନ କର ।

**"ବସ୍ତୁ ସିଦ୍ଧି ବିଚାରେଣ ନ କିଞ୍ଚିତ କର୍ମ କୋଟିଭିଃ ।"**

ଯଦି ସୀମିତ ବସ୍ତୁଗୁଡ଼ିକ ପାଇଁ ମନୁଷ୍ୟ ଏତିକି ପରିମାଣରେ ଦୁଃଖୀ ହେଉଥାଏ, ତେବେ ସେଥିରେ ଅଧିକ ବୃଦ୍ଧି ହେଲେ ଆନୁପାତିକ ଦୃଷ୍ଟିରୁ ତ ଅନେକ ଦୁଃଖ ବଢିଯିବା ନିଶ୍ଚିତ । ସିଦ୍ଧିଗୁଡ଼ିକର ଶକ୍ତି କୌଣସି ମନୁଷ୍ୟକୁ ସୁଖୀ କରିପାରିବ ନାହିଁ ବରଂ ସେଗୁଡ଼ିକ ତାଙ୍କୁ ଅଧିକ ଦୁଃଖୀ କରିଦେବ ।

**ପ୍ରଶ୍ନ ୧୧– କଣ ସିଦ୍ଧିଗୁଡ଼ିକ ଦ୍ୱାରା ଶରୀରକୁ ଅଦୃଶ୍ୟ କରିପାରିବା ?**

**ଉତ୍ତର –** ହଁ, ଆତ୍ମସିଦ୍ଧି ଦ୍ୱାରା ଶରୀରର ଅସ୍ତିତ୍ୱ ରହେ ନାହିଁ । ଆମର ବାସ୍ତବ ସ୍ୱରୂପ ହେଉଛି ଅଶରୀରୀ, ନିରାକାର । ତୁମେ କ'ଣ ଆତ୍ମା ନୁହଁ ? ଯେ ଏଇ ପରମ ସତ୍ୟ ଆତ୍ମବସ୍ତୁରେ ସନ୍ତୁଷ୍ଟ ନୁହେଁ, ସେହିଭଳି ଅଜ୍ଞାନ ହିଁ ଶରୀରକୁ ଅଦୃଶ୍ୟ କରିଦେବାର ସିଦ୍ଧି ପ୍ରାପ୍ତ କରିବାକୁ ଚାହିଁଥାଏ । ଶରୀରର ବୋଧ ନହେବା ବା ଶରୀରକୁ ଲୋପ କରିଦେଲେ ମୁକ୍ତି ହୁଏ ନାହିଁ । ଯଦି ସେମିତି ହେଉଥାନ୍ତା, ତେବେ ସୁଷୁପ୍ତି ଏବଂ ଅପରେସନ ହେବା ସମୟରେ ଯେତେବେଳେ ଶରୀରର ବୋଧ ରହେନାହିଁ, ସେତେବେଳେ ସମସ୍ତେ ମୁକ୍ତ ହୋଇ ଯାଉଥାନ୍ତେ । ତୁମେ ଦେହ ନୁହଁ, ଏହି ବିଚାର ଦ୍ୱାରା ଦେହ ଲୋପ ହେଉ ବା କୌଣସି ସିଦ୍ଧି ଦ୍ୱାରା ଦେହ ଲୋପ ହେଉ, ସେଥିରେ କ'ଣ ଫରକ ପଡୁଛି ? ଦେହଭାବର ନାଶ ହେବା ହିଁ ମୁକ୍ତି ଏବଂ ଆତ୍ମାର ଦେହ ସହିତ ଏକତ୍ୱ ରହିବା ହିଁ ବନ୍ଧନ ।

**ପ୍ରଶ୍ନ ୧୨– ଆତ୍ମସାକ୍ଷାତ୍କାର ସହିତ କଣ ସିଦ୍ଧିଗୁଡ଼ିକ ବି ପ୍ରାପ୍ତ ହୋଇଯାଏ ?**

**ଉତ୍ତର –** ଆତ୍ମା ନିତ୍ୟପ୍ରାପ୍ତ ତଥା ସିଏ ସବୁ ପ୍ରାଣୀଙ୍କର ସ୍ୱରୂପ । ଆତ୍ମପ୍ରାପ୍ତି ପାଇଁ କୌଣସି ସାଧନ, ସାମଗ୍ରୀ, ମନ୍ତ୍ର ଇତ୍ୟାଦିର ଆବଶ୍ୟକ ହୁଏ ନାହିଁ, ଯେତେବେଳେ କି ସିଦ୍ଧି ହେଉଛି ସାଧନ ଦ୍ୱାରା ପ୍ରାପ୍ତ ଅନିତ୍ୟ ବସ୍ତୁ । ସିଦ୍ଧିର ଆକାଙ୍କ୍ଷା ରଖୁଥିବା ବିବେକହୀନ ମାନବକୁ ମନ ପ୍ରତି ନିରନ୍ତର ସତର୍କ ରହିବାକୁ ପଡ଼ିଥାଏ । କିନ୍ତୁ ଆତ୍ମସାକ୍ଷାତ୍କାର ମନୋନାଶ ହେଲା ପରେ ହିଁ ହୋଇଥାଏ । ସେପର୍ଯ୍ୟନ୍ତ ସିଦ୍ଧିଗୁଡ଼ିକ ବ୍ୟକ୍ତ କରିବାକୁ, ପ୍ରଦର୍ଶନ କରିବାକୁ ଇଚ୍ଛା ହୁଏ, ଯେପର୍ଯ୍ୟନ୍ତ ଅହଂକାର ବିଦ୍ୟମାନ ରହିଥାଏ । ଆତ୍ମା, ଅହଂକାର ଶୂନ୍ୟ ତଥା ଆତ୍ମସାକ୍ଷାତ୍କାର ଶୂନ୍ୟ ହେଲାପରେ ହିଁ ହୋଇଥାଏ । ଆତ୍ମ ପ୍ରାପ୍ତି ହେଲା ପରେ ସମାଧି ପାଇଁ ଇଚ୍ଛା ହୁଏ ନାହିଁ ।

ଆତ୍ମସାକ୍ଷାତ୍କାର ସହିତ ସିଦ୍ଧିଗୁଡ଼ିକର ଉତ୍ପତ୍ତି ହେବା ବା ନ ହେବା ଉଭୟ ସମ୍ଭବ ନୁହେଁ । ଆତ୍ମସାକ୍ଷାତ୍କାର ପୂର୍ବରୁ ଯଦି ସାଧକ ସିଦ୍ଧିଗୁଡ଼ିକ ପାଇଁ ଇଚ୍ଛା କରୁଥାଏ ତେବେ ଆତ୍ମସାକ୍ଷାତ୍କାର ପରେ ସିଦ୍ଧି ପ୍ରାପ୍ତ ହେବା ସମ୍ଭବ । ତଥା ବିନା ଇଚ୍ଛାରେ ଅନାୟାସରେ ଯଦି କୌଣସି ଜ୍ଞାନୀଙ୍କୁ ସିଦ୍ଧିଗୁଡ଼ିକ ପ୍ରାପ୍ତ ହୋଇଯାଉଛି, ତେବେ ସେ ତାକୁ ପ୍ରଦର୍ଶନ ବି କରନ୍ତି ନାହିଁ ।

**ପ୍ରଶ୍ନ ୧୩– ଯୋଗାସନ କରିବା ପାଇଁ ବାଘ, ହରିଣ ଇତ୍ୟାଦିକୁ ମାରି ତାହାର ଚର୍ମ ଉପରେ ବସିବା ଉଚିତ ?**

**ଉତ୍ତର –** ମନକୁ ହିଁ ବାଘ ଅଥବା ହରିଣ ବୋଲି ମାନିନେବା ଉଚିତ । ସେମାନଙ୍କୁ ହିଁ ଅଭ୍ୟାସ ଏବଂ ବୈରାଗ୍ୟ ଦ୍ୱାରା ବଶ କରିବାକୁ ହେବ । ଜ୍ଞାନମାର୍ଗରେ ଏହାର କୌଣସି ମହତ୍ତ୍ୱ ନାହିଁ । ଅଜ୍ଞାନୀମାନଙ୍କ ପାଇଁ ହିଁ ସେଗୁଡ଼ିକ ଉପଯୋଗ ହୋଇଥାଏ ।

ନିଜର ଆତ୍ମ ସ୍ୱରୂପକୁ ନଜାଣି ନିଜକୁ ଦେହ ବୋଲି ମାନିନେଉଥିବା ସବୁ ଲୋକ ଆତ୍ମହତ୍ୟାକାରୀ ।

**ପ୍ରଶ୍ନ ୧୪– "ମୁଁ କିଏ" ଏହାର ଅନୁଭୂତି କେମିତି ପ୍ରାପ୍ତ ହେବ ?**

**ଉତ୍ତର –** ଏଇ ଶରୀର ପଞ୍ଚଭୂତରେ ତିଆରି ଏବଂ ଏହା ଦ୍ୱାରା ହେବାକୁ ଥିବା ୨୫ ତତ୍ତ୍ୱ ମୁଁ ନୁହେଁ, ଏହା ପ୍ରଥମେ ନିଶ୍ଚୟ କର । ପୁନଶ୍ଚ ସୂକ୍ଷ୍ମ ଶରୀର ଏବଂ ତାହାର ମନ ସହିତ ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚପ୍ରାଣ ଏହି ୧୬ ତତ୍ତ୍ୱ ବି ମୁଁ ନୁହେଁ । ଏହାର ଆଗକୁ ଗଲେ ବି ଏଇ ପ୍ରଶ୍ନ ଉଠିବ ଯେ ସେହି ସଂକଳ୍ପ କେଉଁଠୁ ଉଦୟ ହେଉଅଛି ? ଏହି ସଂକଳ୍ପ ବୁଦ୍ଧିରୁ ଉତ୍ପନ୍ନ ହେଉଛି । ପୁନଶ୍ଚ ସେଇ ବୁଦ୍ଧିର ପ୍ରକାଶକ ସାକ୍ଷୀ କିଏ ? ଏହିଭଳି ସୂକ୍ଷ୍ମ ପରୀକ୍ଷା ଦ୍ୱାରା ଏହା ନିଶ୍ଚୟ ହେବ ଯେ

ସବୁ ଦୃଶ୍ୟର ଶେଷରେ ଯେଉଁ ପ୍ରକାଶକ ବିଦ୍ୟମାନ ଅଛନ୍ତି, ସେହି ସାକ୍ଷୀ ଆତ୍ମା ହେଉଛି ମୁଁ । ଏହି ବ୍ୟକ୍ତିତ୍ୱ ହିଁ ଅହମ୍, ଯାହାକୁ ଲୋକେ 'ମୁଁ' କହିଥାନ୍ତି । ବିଜ୍ଞାନମୟ କୋଷ ବୁଦ୍ଧି ବାସ୍ତବରେ 'ମୁଁ'ର ଆବରଣ, ବୁଦ୍ଧି ନିଜେ ମୁଁ ନୁହେଁ । ମନ-ବୁଦ୍ଧିର ସାକ୍ଷୀ ଆତ୍ମା , ମୁଁ ହିଁ ବ୍ରହ୍ମ । ଏହି ପ୍ରକ୍ରିୟା ଦ୍ୱାରା ଦେହଭାବ ନଷ୍ଟ ହୋଇଯାଏ । ଦେହଭାବ ସହିତ ଯୁକ୍ତ ହେବା ଦ୍ୱୈତ ଏବଂ ଦେହ ଭାବ ରହିତ ହେବା ଅଦ୍ୱୈତ ।

**ପ୍ରଶ୍ନ-୧୫ ସତ୍ୟ ଓ ଅସତ୍ୟ ଭିତରେ କଣ ତଫାତ ଅଛି ?**

**ଉତ୍ତର** - ନାମ, ପଦ, ସମ୍ବନ୍ଧ, ବିଶେଷଣ ତଥା ବୃତ୍ତିଗୁଡିକ ହେଉଛି ଅସତ୍ 'ମୁଁ'ର, ସତ୍ୟ 'ମୁଁ'ର ନୁହେଁ ।

ନିତ୍ୟରେ ଅସୀମ ସମୁଦ୍ର ରହିଛି ଏବଂ ଅହଂକାର 'ମୁଁ ଭାବ' ଏହା ଉପରେ ଏକ ପାଣିଫୋଟକା, ଯାହାକୁ ଜୀବ କୁହାଯାଏ । ଏହି ଅନୁଭୂତି ଯେ, 'ମୁଁ ହେଉଛି ଦେହ'- ଏହା ହିଁ ଭୁଲ୍ । ମୁଁର ଏଇ ମିଥ୍ୟା ଭାବନାକୁ ନଷ୍ଟ କରିବାକୁ ହେବ । ବାସ୍ତବରେ ମୁଁ ସଦାବେଳେ ରହିଛି । ଏହା ଏହିଠାରେ ଏବଂ ବର୍ତ୍ତମାନ ତୁମର ଅସ୍ତିତ୍ୱ ଭାବରେ ସାକ୍ଷାତ୍ ରହିଛି । ମୁଁ ଦେହ-ଏଇ ମିଥ୍ୟା ଜ୍ଞାନ ହେଉଛି ସମସ୍ତ ଅନିଷ୍ଟର ମୂଳ ।

**ପ୍ରଶ୍ନ ୧୬- ଜ୍ଞାନୀ ଓ ଅଜ୍ଞାନୀ ଉଭୟ ତ ସମାନ ଭାବରେ ନିଜକୁ ଦେହ କହିଥାନ୍ତି, ତେଣୁ ତଫାତ୍ କେଉଁଠି ?**

**ଉତ୍ତର** - ଅଜ୍ଞାନୀ 'ମୁଁ'କୁ ଦେହ ଭିତରେ ସୀମିତ ରଖିଥାଏ । ଜ୍ଞାନୀର 'ମୁଁ', ମୁଁ ଦେହ ସଂଘାତ ଏବଂ ତାହାର କ୍ରିୟା ଏ ସବୁ କିଛି ନାହିଁ । ଅଜ୍ଞାନୀ 'ମୁଁ'କୁ ସେହି ବସ୍ତୁ ହିସାବରେ ମାନିନିଏ, ଯାହା 'ମୁଁ' ନୁହେଁ । ନାମ, ରୂପ ହେଉଛି ସଂସାର । ଜ୍ଞାନୀକୁ ନିଜ ଆତ୍ମା ଠାରୁ ଭିନ୍ନ କିଛି ଅଲଗା ସତ୍ତା ଭାବରେ ବୋଧ ହୁଏନାହିଁ । ସେଥିପାଇଁ **'ସର୍ବଂ ଖଲ୍ୱିଦଂ ବ୍ରହ୍ମ'** ଦୃଷ୍ଟିରେ ଜ୍ଞାନୀ ଦେହକୁ ବି ନିଜ ଠାରୁ ପୃଥକ୍ ବୋଲି ମାନେନାହିଁ ।

ବାସ୍ତବରେ 'ମୁଁ' ମୌନ ରହିଥାଏ । ଜଣେ ବ୍ୟକ୍ତି ନିଜକୁ ମୁଁ ଦେହ, ମୁଁ ଏହା, ମୁଁ ଏହା ନୁହେଁ ଏଭଳି ବିଚାର କରିବା ଉଚିତ ନୁହେଁ । ଏହା ଅଥବା ତାହା କହିବା ମିଥ୍ୟା । ଏସବୁ ହେଉଛି ସୀମା । କେବଳ 'ମୁଁ ଅଛି' ଅର୍ଥାତ୍ କେବଳ ଅସ୍ତିତ୍ୱ ହିଁ ସତ୍ୟ ।

ସୁଷୁପ୍ତି ଅବସ୍ଥାରେ 'ମୁଁ'ର ବୋଧ ହୁଏନାହିଁ । ଜାଗ୍ରତ ଅବସ୍ଥାରେ ଦେହ ସହିତ ସମଗ୍ର ଜଗତ 'ମୁଁ' ଭାବରେ ବୋଧ ହୋଇଥାଏ । ଏହିଭଳି ସମ୍ମିଳିତ ମୁଁ ହେଉଛି ଅହଂକାର ବା ଅହଂବୃତ୍ତି । ଯେତେବେଳେ ଅହଂ କେବଳ ଆତ୍ମାକୁ ହିଁ ନିର୍ଦ୍ଦେଶିତ

କରେ, ସେତେବେଳେ ଏହି ଅହଂର ସ୍ଫୁରଣ ହୁଏ । ସେତେବେଳେ ଏହା ହେଉଛି ଆତ୍ମା ।

**ପ୍ରଶ୍ନ ୧୭– 'ମୁଁ କର୍ତ୍ତାଭୋକ୍ତା ଅଟେ' ଏହିଭଳି ବିଚାର ଅଜ୍ଞାନ କାହିଁକି ?**

**ଉତ୍ତର** – ବାସ୍ତବରେ 'ମୁଁ' ହେଉଛି ସମସ୍ତ ଦୃଶ୍ୟ, ଶରୀର, କର୍ମ ଏବଂ ଫଳ ଭୋଗର ଉପରେ । ପୁଣି କର୍ମର କର୍ତ୍ତା କିଏ ? କର୍ମର କର୍ତ୍ତା ହେଉଛି ବାସନାଯୁକ୍ତ ମନ । ବାସନା ଅହଂକାର ଦ୍ୱାରା ଉଦୟ ହୋଇଥାଏ । ଅହଂକାରର ମୂଳ ହେଉଛି ଆତ୍ମା । ଯାହା ଉପରେ ସେହି ମନ ବାସନା କର୍ମ ଏବଂ ଫଳ ଭୋକ୍ତା ନିର୍ଭର କରେ । ସେହି ମନର ସ୍ୱତନ୍ତ୍ର ସତ୍ତା ନାହିଁ, ତେଣୁ ଏମିତି ଅହଂକାର କରିବା ଶୋଭନୀୟ ନୁହେଁ ଯେ ମୁଁ ହେଉଛି କର୍ମର କର୍ତ୍ତା । ମନ, କର୍ତ୍ତା ଆତ୍ମାର ଅସ୍ତିତ୍ୱ ଦ୍ୱାରା ହିଁ ହୋଇଥାଏ । ଆତ୍ମାର ସକ୍ଷମତାରେ, ସାକ୍ଷୀତ୍ୱତାରେ ହିଁ କର୍ମ ହୋଇଥାଏ । ଆତ୍ମଜ୍ଞାନ ପ୍ରାପ୍ତି ଦିଗରେ କର୍ମ ବାଧା ସୃଷ୍ଟି କରେ ନାହିଁ । କର୍ତ୍ତାର ମିଥ୍ୟା ଦେହାଭିମାନ ହିଁ ଏଥିପାଇଁ ବାଧକ । ସେହି ମିଥ୍ୟା ଦେହାଭିମାନ ଏବଂ କର୍ତ୍ତୃତ୍ୱାଭିମାନରୁ ମୁକ୍ତି ପାଇବା ହିଁ ଜୀବର ବାସ୍ତବ ଲକ୍ଷ୍ୟ ।

**ପ୍ରଶ୍ନ ୧୮– ମୋର ବ୍ୟବହାର କଲାବେଳେ ଆତ୍ମଭାବ, ସାକ୍ଷୀଭାବ ରହୁନାହିଁ ଏବଂ ଜ୍ଞାନୀ ପାଇଁ ବିକ୍ଷେପ ନ ରହୁଥିବାରୁ କ'ଣ ତାଙ୍କୁ ବନ୍ଧନ ପ୍ରାପ୍ତି ହେବନାହିଁ ?**

**ଉତ୍ତର–** ହଲଚଲ ହେବା ବି କଳ୍ପିତ ଏବଂ ତାକୁ ଦୂର କରିବା ପାଇଁ ଧ୍ୟାନ ପ୍ରାଣାୟାମାଦି ସାଧନ କରିବା ବି କଳ୍ପିତ । ଏସବୁ ଅନ୍ତଃକରଣ ଉପାଧିର କାମ । ଏସବୁ ସେହି ଉପାଧିଗୁଡ଼ିକ ଦ୍ୱାରା ହିଁ ହୋଇଥାଏ । ଉପାଧିଗୁଡ଼ିକ ନିଜ ନିଜ କାମ ନିଶ୍ଚୟ କରିବେ, ଅଟକି ରହିପାରିବେ ନାହିଁ । ଏହା ବିକ୍ଷେପ, ଦୁଃଖ, ଦ୍ୱନ୍ଦ୍ୱ ସବୁ ଉପାଧିର ଏବଂ ଉପାଧିରେ ହିଁ ରହିଛି, ପ୍ରକାଶକ, ସାକ୍ଷୀ ତୁମ ଆତ୍ମାରେ ନାହିଁ । ତୁମେ ତ ହେଉଛ ସେହି ହଲଚଲ, ବିକ୍ଷେପ, ଦୁଃଖାଦିର ପ୍ରକାଶକ, କୂଟସ୍ଥ, ଏକରସ ଆତ୍ମା ।

**ପ୍ରଶ୍ନ ୧୯– ବାସ୍ତବ ପୂଜା କଣ ?**

**ଉତ୍ତର** – ନିଜର ଇଷ୍ଟଙ୍କ ଠାରେ ନିଜକୁ ହଜେଇଦେବା, ଏକ କରିଦେବା, ମିଶେଇ ଦେବା ହିଁ ପ୍ରକୃତ ପୂଜା । ଆପଣାର ଅହଂଭାବକୁ, ବ୍ୟକ୍ତିତ୍ୱକୁ ଆପଣାର ଭଗବାନ ଠାରେ ମିଶେଇଦେବା ଏବଂ ନିଜକୁ ସେହି ଭଗବାନ ଭାବରେ ଜାଣିବା ହିଁ ଜ୍ଞାନୀମାନଙ୍କ ପାଇଁ, ଭକ୍ତମାନଙ୍କ ପାଇଁ ପୂଜା ହୋଇଥାଏ । ଅଜ୍ଞାନୀ ନିଜ ଠାରୁ ପୃଥକ୍ ପଥର, କାଷ୍ଠ , ମାଟି ବା ଧାତୁରେ ତିଆରି ମୂର୍ତ୍ତିର ସେବାକୁ ହିଁ ପୂଜା ବୋଲି ମାନିଥାଏ ।

**ପ୍ରଶ୍ନ ୨୦– ନମସ୍କାର କ'ଣ ?**

**ଉତ୍ତର** – ନମସ୍କାରର ଅର୍ଥ ହେଉଛି 'ଅହଂକାରର ପ୍ରଶମନ' । ଏଇ ଶମନ କ'ଣ ? ନିଜର ଉଦ୍‌ଗମ ମୂଳରେ ବିଲୀନ ହେବା, ଯଥା– ନଦୀଗୁଡ଼ିକର ସମୁଦ୍ରରେ ବିଲୀନ ହେବା ଅର୍ଥାତ୍ ସେମାନଙ୍କର ଗଙ୍ଗା, ଯମୁନା ଇତ୍ୟାଦି ନାମ ରୂପର ଶମନ ହେବା ।

ପରମାତ୍ମାଙ୍କୁ ଉପରେ ଉପରେ ଜାନୁଭାଙ୍ଗି ଉପାସନା କରି, ପ୍ରଣାମ ତଥା ସାଷ୍ଟାଙ୍ଗ ଦଣ୍ଡ ପ୍ରଣାମ କରି ଠକି ଦିଆଯାଇ ପାରିବ ନାହିଁ । ପରମାତ୍ମା ବା ଗୁରୁ ତ ଏହା ଦେଖିଥାନ୍ତି ଯେ ତାଙ୍କର ବ୍ୟକ୍ତିତ୍ୱ, ଅହଂକାର, ଦେହାଭିମାନ ଅଛି ନା ନାହିଁ ।

ସଦ୍‌ଗୁରୁ ବା ଈଶ୍ୱର ନମସ୍କାର ସ୍ୱୀକାର କରି ନେଇଛନ୍ତି, ପୁରୁଣା ପାପ କ୍ଷମା ହୋଇଗଲା କେହିକେହି ଏମିତି ଭାବି ପୂର୍ବ ଭଳି ପାପମୟ ଜୀବନ ବିତେଇଥାନ୍ତି । ତେବେ ଏହିଭଳି ଲୋକମାନଙ୍କର ଗୁରୁଙ୍କ ନିକଟକୁ ଯାଇ ନମସ୍କାର କରିବା, ଭେଟିଦେବାର ମୂଲ୍ୟ କ'ଣ ? ସବୁ କିଛି ବ୍ୟର୍ଥ । ନିଜକୁ ନିଜେ ଠକିହେବା, ଗୁରୁ ବା ଭଗବାନଙ୍କୁ ଠକିବା ନୁହେଁ । ମନକୁ ନିର୍ମଳ କରିବା ପାଇଁ ଚେଷ୍ଟା କରିବା ଉଚିତ, ସାଷ୍ଟାଙ୍ଗ ପ୍ରଣାମ ନୁହେଁ ।

**ପ୍ରଶ୍ନ ୨୧– ଗୁରୁ ଭଗବାନଙ୍କ ସ୍ୱରୂପ । ତେବେ ସେ ସବୁ ଜାଣିଥିବେ ନା ନାହିଁ ?**

**ଉତ୍ତର** – ଯଦି ଗୁରୁ ଭଗବାନ ସ୍ୱରୂପ, ତେବେ ସେ ହେଉଛନ୍ତି ସବୁ କିଛି, ଅଖଣ୍ଡ ତାଙ୍କ ବ୍ୟତୀତ ଜାଣିବା ଭଳି ଆଉ କିଛି ହେଲେ ନାହିଁ । ଯଦି ସେ ଅନ୍ୟମାନଙ୍କ ଭଳି, ତେବେ ସେ ବି ଅନ୍ୟମାନଙ୍କ ଭଳି ଅଜ୍ଞାନ । ମୁଁ କେବେ ଜ୍ଞାନୀ ହେବି, ମୁକ୍ତ ହେବି ଏଭଳି ପ୍ରଶ୍ନ ସଦ୍‌ଗୁରୁଙ୍କୁ ପଚାରିବା ଉଚିତ୍ ନୁହେଁ ।

**ପ୍ରଶ୍ନ ୨୨ – ସମର୍ପଣ କ'ଣ ଏବଂ କିପରି କରାଯାଏ ?**

**ଉତ୍ତର** – ପୂର୍ଣ୍ଣ ସମର୍ପଣର ଅର୍ଥ ହେଉଛି 'ମୁଁ' (ଦେହଭାବ) ସଂପୂର୍ଣ୍ଣ ଭାବରେ ଲୋପ ପାଇବା । ଏହି ଅବସ୍ଥାରେ ପୂର୍ବର ସବୁ ସଂସ୍କାର ନଷ୍ଟ ହୋଇ ମୁକ୍ତିର ଅନୁଭବ ହୋଇଥାଏ ।

ପ୍ରାରମ୍ଭରେ ସମ୍ପୂର୍ଣ୍ଣ ସର୍ବାଙ୍ଗ ସମର୍ପଣ ଅବଶ୍ୟ କଠିନ ଭଳି ମନେ ହୋଇଥାଏ କିନ୍ତୁ ସମୟ ଆସିଲେ ସେଥିରେ ପୂର୍ଣ୍ଣ ସମର୍ପଣ ହୋଇଯିବ । ଆଂଶିକ ସମର୍ପଣ ନିଶ୍ଚିତ ଭାବରେ ସମସ୍ତଙ୍କ ପାଇଁ ସୁଲଭ ।

ରୋଗୀ ନିଜର ରୋଗରୁ ଉଦ୍ଧାର ପାଇବା ପାଇଁ ଚିକିତ୍ସକଙ୍କ ହାତରେ ସମ୍ପୂର୍ଣ୍ଣ ସମର୍ପଣ କରିଦେଇଥାଏ । ଚିକିତ୍ସକଙ୍କୁ ଚିକିତ୍ସା କରିବା ପାଇଁ ପୂର୍ଣ୍ଣ ସ୍ୱାଧୀନତା ଦେବା ଉଚିତ ତଥା ରୋଗୀ କିଛି ନ କହି କେବଳ ଶାନ୍ତ ରହିବା ଆବଶ୍ୟକ ।

ସେହିପରି ଚୁପ୍ ହୋଇଯାଅ । ଏହା ହେଉଛି ସଦ୍‌ଗୁରୁଙ୍କ ପ୍ରତି ସମର୍ପଣ ।

ପୂର୍ଣ୍ଣ ସମର୍ପଣ କରିଦେଲା ପରେ କୌଣସି ପ୍ରକାରର ପ୍ରଶ୍ନ ସାଧକ ମନରେ ଉଠିଥାଏ ନାହିଁ । ଯଦି ଉଠୁଛି, ତେବେ ସେ ପୂର୍ଣ୍ଣ ସମର୍ପଣ କରିନାହାନ୍ତି ।

ଯଦି କେହି ଉଚ୍ଚତର, ବିଶ୍ୱାସଯୋଗ୍ୟଙ୍କ ଚରଣରେ ସମର୍ପଣ କରିଦିଏ, ତେବେ ସେ ପୁଣି ତୁମକୁ କେମିତି ବନ୍ଧନରେ ପକେଇବେ ? ତୁମେ ପୂର୍ଣ୍ଣ ସମର୍ପଣ କରିଦିଅ ଏବଂ ସେ ଉଚ୍ଚତର ଶକ୍ତି ନିଜକୁ ତୁମ ଭିତରେ ପ୍ରକଟ କରିଦେବେ ।

ଯଦି ସମର୍ପଣ ଯଥାର୍ଥରେ ହୋଇଥାଏ, ତେବେ ବ୍ୟକ୍ତିତ୍ୱର ସମସ୍ତ ଭାବ ନଷ୍ଟ ହୋଇଯାଏ ଏବଂ ଦୁଃଖର କୌଣସି କାରଣ ରହେନାହିଁ । ଶାଶ୍ୱତ ସତ୍ତା ହେଉଛି କେବଳ ଆନନ୍ଦ, ତାହା ପ୍ରକଟ ହୋଇଯାଏ ।

ଏକାଥରକେ ସମ୍ପୂର୍ଣ୍ଣ ସମର୍ପଣ କରିଦିଅ ଏବଂ ନିଜ ଇଚ୍ଛା, ଦେହାଭିମାନକୁ ଶେଷ କରିଦିଅ ।

ବ୍ୟକ୍ତି କେବଳ ଶିଷ୍ୟତ୍ୱ, ଦୀକ୍ଷା, ସମର୍ପଣ ଇତ୍ୟାଦି ବାହ୍ୟ ନୀତିନିୟମର ଅନ୍ୱେଷଣରେ ହିଁ ସନ୍ତୁଷ୍ଟ ରହିବା ଉଚିତ ନୁହେଁ । ସମସ୍ତ ଦୃଶ୍ୟଗୁଡ଼ିକର ମୂଳ ଲୁଚି ରହିଥିବା ସତ୍ୟକୁ କେବେହେଲେ ଭୁଲିଯାଅ ନାହିଁ ଏବଂ ସେ' ହିଁ ତୁମେ ।

**ପ୍ରଶ୍ନ ୨୩– ଗୃହସ୍ଥ, ସନ୍ୟାସୀ ଏବଂ ବ୍ରହ୍ମଚର୍ଯ୍ୟ ଅବସ୍ଥା ଭିତରେ କିଏ ପବିତ୍ର ?**

**ଉତ୍ତର** – ସନ୍ୟାସୀ ଜୀବନରେ ବିଶ୍ୱାମିତ୍ର ସେତିକି ପବିତ୍ର ଥିଲେ, ଯେତିକି ବିବାହିତ ଜୀବନରେ ଥିଲେ, ସେଥିରେ ତିଳେ ହେଲେ ପ୍ରଭେଦ ନଥିଲା । ବିବାହିତ ଅବସ୍ଥାରେ ବି ସେ ଶରୀର ଦୃଷ୍ଟିରୁ ସେତିକି ଅପବିତ୍ର ଥିଲେ ଯେତିକି ସନ୍ୟାସୀ ଅବସ୍ଥାରେ ଥିଲେ ।

ଶୁକମୁନି ଜ୍ଞାନୀଙ୍କ ଉଦ୍ଦେଶ୍ୟରେ ଯେ କହୁଛନ୍ତି ସେ ବିବାହ କଲେ ଏବଂ ତାଙ୍କ ସନ୍ତାନ ସନ୍ତତି ହେଲେ ବି ତାଙ୍କ ପାଇଁ ଅପବିତ୍ରତା ନାହିଁ କି ବନ୍ଧନ ନାହିଁ ।

**ପ୍ରଶ୍ନ ୨୪– ଜ୍ଞାନୀଙ୍କର ଜୀବନ ଚରିତ୍ର କିପରି ହୋଇଥାଏ ?**

**ଉତ୍ତର** – ଜ୍ଞାନୀଙ୍କର ବାହ୍ୟ ରୂପ, ଆଚରଣକୁ ଦେଖି ଭୁଲ୍ ବୁଝିବା ଉଚିତ ନୁହେଁ । "ବିବେକ ଚୁଡାମଣି"ରେ କୁହାଯାଇଛି ଯେ ଯଦ୍ୟପି ସନ୍ଦେହରେ ଜୀବନ୍ମୁକ୍ତ ପୁରୁଷ ପ୍ରାରବ୍ଧ ଅନୁସାରେ ଜ୍ଞାନ ବା ଅଜ୍ଞାନରେ ଆବୃତ୍ତ ହୋଇଥାନ୍ତି ତଥାପି ସେ ସବୁବେଳେ ସେହି ଆକାଶ ଭଳି ନିର୍ମଳ, ଯେ ବାୟୁରେ ବଶୀଭୂତ ହୋଇ କେତେବେଳେ ବି ଘନାବୃତ୍ତ ହୋଇଥାନ୍ତି ଏବଂ କେତେବେଳେ ବି ମେଘମୁକ୍ତ ହୋଇ ସ୍ୱଚ୍ଛ ହୋଇଥାନ୍ତି । ଉକ୍ତ ବ୍ୟକ୍ତି ସବୁ ଅବସ୍ଥାରେ ଆତ୍ମନିଷ୍ଠ ରହିଥାନ୍ତି । ଆତ୍ମାରେ ହିଁ ରମଣ କରିଥାନ୍ତି ।

ବିୟୋଗ ସମୟରେ, ହାନି ହେଲାବେଳେ ଜ୍ଞାନୀ ସାଧାରଣ ଲୋକମାନଙ୍କ ପରି ଦୁଃଖୀ ଭଳି ମନେ ହୋଇଥାନ୍ତି ।

ଜ୍ଞାନୀ ଯଦି କାମୋପଯୋଗରେ ନିମଗ୍ନ ହେଉଥିଲା ଭଳି ମନେ ହେଉଥାନ୍ତି ତଥାପି ସୁଦ୍ଧା ଏହା ଜାଣିବା ଉଚିତ ଯେ, ସେତେବେଳେ ସେ ଆତ୍ମାର ସେହି ସହଜ ଶାଶ୍ୱତ ଆନନ୍ଦରେ ତଲ୍ଲୀନ ଅଛନ୍ତି । ସେ ନିଜର ଭୂତ ପ୍ରକୃତି ଏବଂ ସ୍ୱରୂପକୁ ପ୍ରାପ୍ତ ହୋଇଛନ୍ତି ଅର୍ଥାତ ନିଜକୁ ଜୀବ ଏବଂ ବ୍ରହ୍ମ ରୂପରେ ବିଭାଜିତ କରିନେଇଛନ୍ତି ତଥା ସେ ପୁନର୍ମିଳିତ ହେବାର ଆନନ୍ଦ ପାଉଛନ୍ତି ।

କ୍ରୋଧରୂପ ଧାରଣ କରି ବି ସେ ତାଙ୍କର ପ୍ରିୟ ଲୋକମାନଙ୍କର, ଅପରାଧୀର ହିତୈଷୀ ହୋଇଥାନ୍ତି । ଜ୍ଞାନୀମାନଙ୍କର ସମସ୍ତ କ୍ରିୟା ହେଉଛି ମାନବୀୟ ସ୍ତରରେ ଦିବ୍ୟତ୍ୱର ବ୍ୟକ୍ତ ରୂପ । ଜ୍ଞାନୀଙ୍କର ବିଦେହ ମୁକ୍ତି ସମ୍ବନ୍ଧରେ ସାମାନ୍ୟ ପରିମାଣର ସନ୍ଦେହ କରିବା ଉଚିତ ନୁହେଁ । ଜ୍ଞାନୀଙ୍କର ଅସ୍ତିତ୍ୱ ଜଗତକଲ୍ୟାଣ ପାଇଁ ହିଁ ହୋଇଥାଏ । ତାଙ୍କର ସମସ୍ତ କ୍ରିୟାଗୁଡ଼ିକ ପ୍ରାରବ୍ଧ ଅନୁସାରେ ସ୍ୱୟଂ ହୋଇଥାଏ । ଜ୍ଞାନୀମାନଙ୍କର ବାହ୍ୟ ଆବରଣ ଲୋକମର୍ଯ୍ୟାଦା ବିରୁଦ୍ଧରେ ଯାଉଥିଲେ ବି ବିମୂଢ଼ ହୋଇ ତାଙ୍କର ତିରସ୍କାର କରିବା ଅନୁଚିତ ।

ପରୀକ୍ଷିତ ନିର୍ଜୀବ ନବଜନ୍ମିତ ଶିଶୁ ଥିଲେ । ମହିଳାମାନେ ବାଳକଟିକୁ ରକ୍ଷା କରିବା ପାଇଁ ଡାକ ପକାଇଲେ । ଶେଷରେ ଶ୍ରୀକୃଷ୍ଣ ସମଗ୍ର ଋଷି, ମୁନି, ବ୍ରହ୍ମଚାରୀମାନଙ୍କ ଆଗରେ କହିଲେ ଯେ ସମ୍ପୂର୍ଣ୍ଣ ଜୀବନ ଯଦି କେହି ବ୍ରହ୍ମଚାରୀ ହୋଇ ରହିଛନ୍ତି ସେ ତାକୁ ସ୍ପର୍ଶ କରିଦେଲେ ସେଇ ପିଲାର ପୁନର୍ଜୀବନ ସମ୍ଭବ ହେବ । ସ୍ୱୟଂ ଶୁକଦେବ ବି ତାକୁ ସ୍ପର୍ଶ କରିବାକୁ ସାହସ କଲେ ନାହିଁ କିମ୍ବା ଋଷିମାନେ ବି କଲେନାହିଁ । ତାପରେ ଶ୍ରୀକୃଷ୍ଣ ନିଜର ହାତ ସ୍ପର୍ଶ କରି କହିଲେ, "ଯଦି ମୁଁ ନିତ୍ୟ ବ୍ରହ୍ମଚାରୀ ହୋଇଥିବି, ତେବେ ବାଳକଟି ଜୀବିତ ହୋଇଯିବ ।" ତା'ପରେ ପିଲାଟି ନିଶ୍ୱାସ ନେବା ଆରମ୍ଭ କଲା ଏବଂ ସେ ହେଲା ପରୀକ୍ଷିତ ।

ଚିନ୍ତା କର । ୧୬୦୦୦ ଗୋପାଙ୍ଗନାମାନଙ୍କ ସମାବୃତ ହୋଇଥିବା କୃଷ୍ଣ କି ପ୍ରକାରର ବ୍ରହ୍ମଚାରୀ ? ଏହା ହିଁ ହେଉଛି ସାକ୍ଷୀ ଭାବର ଚମତ୍କାରିତା ।

**ପ୍ରଶ୍ନ ୨୫– ସନ୍ଥଙ୍କ ସଙ୍ଗରେ ସତ୍‌ସଙ୍ଗ ବ୍ୟତୀତ ଅନ୍ୟ ସମୟରେ ରହିଲେ କ୍ଷତି କ'ଣ ?**

**ଉତ୍ତର –** ସନ୍ଥ ସମାଗମ ନିଶ୍ଚିତ ଭାବରେ କର କିନ୍ତୁ ସବୁବେଳେ ତାଙ୍କ ସଙ୍ଗରେ ରହନାହିଁ । ସତ୍‌ସଙ୍ଗ ଆତ୍ମବିକାଶ ପାଇଁ ନିଶ୍ଚିତ ଭାବରେ ପରମ ଆବଶ୍ୟକ କିନ୍ତୁ ସବୁବେଳେ ସନ୍ଥଙ୍କ ସହିତ ଜଡ଼ିତ ରହିବା ଉଚିତ ନୁହେଁ ।

ଯେଉଁ ସାଧକ ସନ୍ଥଙ୍କ ସହିତ ସଦାବେଳେ ଜଡିତ ହୋଇରହିଥାନ୍ତି ତାଙ୍କ ମନରେ ସନ୍ଥଙ୍କ ପ୍ରତି ଶ୍ରଦ୍ଧା, ଶିଷ୍ଟାଚାର, ଆଜ୍ଞା ପାଳନ ଭଳି ଭାବସବୁ ତଳକୁ ତଳକୁ ଖସି ଖସି ଚାଲିଯାଏ, କାରଣ ସେ ବହୁ କାଳର ସାହଚର୍ଯ୍ୟ ଯୋଗୁ ଶଙ୍କାକୂଳ ହୋଇଥାନ୍ତି ଏବଂ ତାଙ୍କର ସମାଲୋଚକ ହୋଇପଡ଼ନ୍ତି । ଜଣେ ସାଧକ ପାଇଁ ଆସ୍ଥା, ଶୁଦ୍ଧତା ଏବଂ ସଂକଳ୍ପରୁ ପତିତ ହେବା ସବୁଠାରୁ ବଡ ହାନୀକର । ସନ୍ଥମାନଙ୍କ ଠାରୁ ଗ୍ରହଣ କରାଯାଇଥିବା ଜ୍ୟୋତି ତଥା ପ୍ରେରଣାର ଭାବ କ୍ଷୀଣ ବା ଲୁପ୍ତ ହୋଇଯିବା ପୂର୍ବରୁ ହିଁ ସାଧକକୁ ତାଙ୍କ ଠାରୁ ବିଦାୟ ନେଇଯିବା ଉଚିତ ।

ପୂର୍ଣ୍ଣ ବିକଶିତ ମହାକାୟ ବୃକ୍ଷର ଛାୟାରେ ଛୋଟ ଗଛର ଶକ୍ତି ତଥା ଆକାର ବୃଦ୍ଧି ହୋଇପାରେ ନାହିଁ । ସେ ଛୋଟ, ସଂକୁଚିତ, ରୁଗ୍ଣ ହୋଇ ରହିଯାଏ । ସେହି ଚାରାଗଛ ଯଦି ଖୋଲା ଆକାଶତଳେ କୁହୁଡ଼ି, ଖରା, ଶୀତ ତଥା ପରିବର୍ତ୍ତନଶୀଳ ଋତୁଗୁଡ଼ିକର ବିଭିନ୍ନ ପ୍ରକୋପକୁ ସହିନିଏ, ତେବେ ନିଶ୍ଚିତ ଭାବରେ ଆକାଶ ତଥା ଭୂମିରୁ ଆହାର ଗ୍ରହଣ କରି ବଳିଷ୍ଠ ବୃକ୍ଷରେ ପରିଣତ ହୋଇଯିବ । ଯଦି ସାଧୁସଙ୍ଗ ଉପଲବ୍ଧ ନହୁଏ, ତେବେ ନିଜର ମନକୁ ଏକାଗ୍ର କରି ରଖିବା ପାଇଁ ପ୍ରାଣାୟାମ, ଆସନ, ଜପ, ଧ୍ୟାନ, ଭକ୍ତି ଇତ୍ୟାଦି ବାହ୍ୟ ସାଧନଗୁଡ଼ିକୁ କରି ଚାଲିବା ଉଚିତ । ପୁନଶ୍ଚ ସେହି ପରମାତ୍ମା ହିଁ ଗୁରୁ ରୂପରେ ପ୍ରକଟ ହୋଇ ଜ୍ଞାନ ଦ୍ୱାରା ମୁକ୍ତି ପ୍ରଦାନ କରାଇ ଥାଆନ୍ତି । ସଦ୍‌ଗୁରୁ, ଯେ ବାସ୍ତବରେ ଈଶ୍ୱର, ସେ ଭକ୍ତର ମାର୍ଗଦର୍ଶନ କରାଇ ବତାଇଥାନ୍ତି ଯେ, ଈଶ୍ୱର ତୁମ ଠାରେ ଅଛନ୍ତି ଏବଂ ସେ ହେଉଛନ୍ତି ତୁମ ଆତ୍ମା । ଏହାଦ୍ୱାରା ମନ ଅନ୍ତର୍ମୁଖୀ ହୋଇ ସୋଽହମ୍ ଭାବରେ ଆତ୍ମସାକ୍ଷାତ୍‌କାର କରିନିଏ ।

ଗୁରୁ ଆନ୍ତରିକ ତଥା ବାହ୍ୟ ବି । ସେ ବାହାରୁ ମନକୁ ଧକ୍‌କା ଦେଇ ତାକୁ ଅନ୍ତର୍ମୁଖ କରାଇଥାନ୍ତି, ଭିତରୁ ମନକୁ ଆତ୍ମା ଆଡ଼କୁ ଟାଣିନିଅନ୍ତି ।

**ପ୍ରଶ୍ନ ୨୬– ସଦ୍‌ଗୁରୁ କ'ଣ ନିଜ ଶକ୍ତି ଦ୍ୱାରା ଶିଷ୍ୟକୁ ଆତ୍ମସାକ୍ଷାତକାର କରାଇଦିଅନ୍ତି ?**

**ଉତ୍ତର –** ଗୁରୁ ଆତ୍ମସାକ୍ଷାତ୍‌କାର କରାନ୍ତି ନାହିଁ, ସେ କେବଳ ଶିଷ୍ୟର ମନରେ ଥିବା ଅସାକ୍ଷାତ୍‌କାରର ଭ୍ରାନ୍ତିକୁ ଦୂର କରାଇଥାନ୍ତି ।

ଯେ ପର୍ଯ୍ୟନ୍ତ ତୁମେ ଆତ୍ମାର ସାକ୍ଷାତ୍‌କାର ପାଇଁ, ମୁକ୍ତି ପାଇଁ ଚେଷ୍ଟା କରିଚାଲିଛ, ସେ ପର୍ଯ୍ୟନ୍ତ ସଦ୍‌ଗୁରୁଙ୍କ ଆବଶ୍ୟକତା ରହିଛି, ଯଦ୍ୱାରା ସେ ଏହା ନିଶ୍ଚୟ କରାଇଦେଇ ପାରିବେ ଯେ ତୁମେ ହିଁ ଆତ୍ମା, ତୁମେ ହିଁ ମୁକ୍ତ । ଯେପର୍ଯ୍ୟନ୍ତ ତୁମେ ନିଜକୁ ଦେହ ଏବଂ ଆତ୍ମାକୁ, ଗୁରୁଙ୍କୁ ଭିନ୍ନ ବୋଲି ଭାବୁଛ, ସେ ପର୍ଯ୍ୟନ୍ତ

ଗୁରୁ ଆବଶ୍ୟକ । ଏଇ ଦ୍ୱୈତ ଭାବନା ନଷ୍ଟ ହେବା ହିଁ ଅଜ୍ଞାନର ବିନାଶ । ଯେହେତୁ ତୁମେ ନିଜକୁ ଦେହ ବୋଲି ମାନିନେଇ ବସିଛ, ସେଥିପାଇଁ ଗୁରୁ ବି ତୁମକୁ କେହି ଦେହଧାରୀ ଭଳି ଦେଖାଯାନ୍ତି । ତୁମେ ଦେହ ନୁହଁ କି ଗୁରୁ ଦେହ ନୁହଁନ୍ତି । ତୁମେ ଆତ୍ମା । ଗୁରୁ ବି ଆତ୍ମା । ଏହିଭଳି ଜ୍ଞାନ ଯାହାଙ୍କ ଠାରୁ ମିଳେ ସେ ଗୁରୁ ।

**ପ୍ରଶ୍ନ ୨୭– ଏହା କେମିତି ଜାଣିବା ଯେ ପୂର୍ଣ୍ଣଭାବରେ ଗୁରୁ, ଗୁରୁ ତିଆରି କରିବାରେ ଅକ୍ଷମ ?**

**ଉତ୍ତର –** ତାଙ୍କ ସାନ୍ନିଧ୍ୟରେ ପାଉଥିବା ଶାନ୍ତି ତଥା ତୁମ ଭିତରେ ସୃଷ୍ଟି ହେଉଥିବା ଶ୍ରଦ୍ଧା ଦ୍ୱାରା । ଯାହାଙ୍କ ପାଖରେ ବସିଲେ ମନ ସ୍ୱତଃ ଶାନ୍ତ ହେବାକୁ ଲାଗେ, ଶଙ୍କା ସବୁ କମି କମି ଯାଏ, ସେଇଠୁ ଉଠି ଚାଲିଯିବା ପାଇଁ ଇଚ୍ଛା ହୁଏନା, ମନ ସବୁବେଳେ ତାଙ୍କ ଚରଣ ଆଡ଼କୁ ଟାଣି ହୋଇ ରୁହେ, ସେତେବେଳେ ଜାଣିନିଅ ଯେ ତୁମକୁ କେହି ସଦ୍‌ଗୁରୁ ପ୍ରାପ୍ତ ହୋଇଛନ୍ତି । ଏହା ହିଁ ହେଉଛି ସେହି ସ୍ଥାନ, ଯେଉଁଠି ନିଜର ସବୁ କିଛି ସମର୍ପଣ କରାଯାଇପାରେ ।

**ପ୍ରଶ୍ନ ୨୮– ବିନା ଗୁରୁରେ ଜଣେ କ'ଣ ନିଜେ ନିଜେ ଶାସ୍ତ୍ରବର୍ଣ୍ଣିତ ସାଧନାଗୁଡ଼ିକୁ କରିପାରିଲେ ମୁକ୍ତ ହୋଇପାରିବ ?**

**ଉତ୍ତର –** ଯାହା ନିଜର ସ୍ୱରୂପ, ସେହିଭଳି ମୁକ୍ତିର ଆନନ୍ଦ ପାଇଁ ସାକ୍ଷାତ୍‌କାର କରିବାକୁ ଚେଷ୍ଟା କରିବାକୁ ଉଚିତ୍ । ସେହି ପରମାନନ୍ଦର ଅନୁଭୂତି କେବଳ ଜ୍ଞାନ ଦ୍ୱାରା ହୋଇପାରିବ ତଥା ଜ୍ଞାନର ପ୍ରାପ୍ତି କେବଳ ଆତ୍ମବିଚାର ବା 'ମୁଁ କିଏ' ର ଅନବରତ ଅନ୍ୱେଷଣ ଦ୍ୱାରା ହୋଇଥାଏ । ଏହି ଆତ୍ମାର ଅନ୍ୱେଷଣ ପଦ୍ଧତିକୁ ଜାଣିନେବା ପାଇଁ ଗୁରୁଙ୍କ କୃପା ପାଇବା ଆବଶ୍ୟକ ।

କେବଳ ପୁସ୍ତକ ଅଧ୍ୟୟନ ଦ୍ୱାରା ସେହି ଆନନ୍ଦ ପ୍ରାପ୍ତି କରିବା କଦାପି ସମ୍ଭବ ନୁହେଁ । ତାହା ତ କେବଳ ସଦ୍‌ଗୁରୁଙ୍କ ଦ୍ୱାରା ବେଦାନ୍ତ ତତ୍ତ୍ୱର ଶ୍ରବଣ ମନନ ଇତ୍ୟାଦି ସାଧନା ଦ୍ୱାରା ଏବଂ ସଦ୍‌ଗୁରୁଙ୍କ ପ୍ରତି ଭକ୍ତିପୂର୍ଣ୍ଣ ସାବଧାନତା ଅବଲମ୍ବନ କରି ତାଙ୍କର ଆଦେଶଗୁଡ଼ିକୁ ପାଳନ କରିବାରେ ନିହିତ । ନିଜର ବିଦ୍ୱତ୍ତା ଦ୍ୱାରା ତାହା ହେବ ନାହିଁ ।

**"ଗୁରୁ ବିନ ଭବ ନିଧି ତରଇ ନ କୋଇ"**
**ଆଚାର୍ଯ୍ୟବାନ୍ ପୁରୁଷୋ ବେଦ**
**ତଦ୍ ବିଜ୍ଞାନାର୍ଥ ସଦଗୁରୁମେବାଭିଗଚ୍ଛେତ**
**ତଦ୍‌ବିଦ୍ଧି ପ୍ରଣିପାତେନ**

ଗୁରୁ ମଣିଷ ରୂପରେ ପ୍ରକଟ ହୋଇ ମଣିଷର ଦେହାଭିମାନକୁ ଦୂର କରାଇଥାନ୍ତି । ତୁମେ ବର୍ତ୍ତମାନ 'ସାକ୍ଷାତ୍‌କାର କରିନାହଁ', 'ମୁକ୍ତି ପାଇ ନାହଁ' ଏଇ ଭ୍ରାନ୍ତିକୁ ଦୂର କରାଇବା ପାଇଁ ଗୁରୁଙ୍କର ବିଶେଷ ଆବଶ୍ୟକତା ରହିଛି । ଏହି ଭ୍ରାନ୍ତି ଗୁରୁଙ୍କ ବିନା ଦୂର ହୋଇନଥାଏ । ସେ କେବଳ ଅଜ୍ଞାନକୁ ହଟାଇବା ଦିଗରେ ଆମର ସାହାଯ୍ୟ କରିଥାନ୍ତି, ଆତ୍ମ ସାକ୍ଷାତ୍‌କାର କରାଇବା ପାଇଁ ନୁହେଁ ।

**ପ୍ରଶ୍ନ ୨୯– ଗୁରୁ କିପରି ସାକ୍ଷାତ୍ ପରଂବ୍ରହ୍ମ ହୋଇପାରିବେ ?**

**ଉତ୍ତର –** ତୁମେ କଳ୍ପନା କରି ନେଇଥାଅ ଯେ ଗୁରୁ ହେଉଛନ୍ତି ଦେଖାଯାଉଥିବା ଶରୀର ମାତ୍ର । ସେମିତି ନୁହେଁ । ଗୁରୁ ଭିତରେ ଅଛନ୍ତି । ବସ୍ତୁତଃ ଆତ୍ମା ହିଁ ଗୁରୁ । ଏହି ସତ୍ୟକୁ ବୋଧ କର । ନିଜ ଭିତରେ ଖୋଜ ଏବଂ ତାହାର ଦର୍ଶନ କର । ସେହି ଅବସ୍ଥାରେ ଗୁରୁଙ୍କ ସହିତ ତୁମର ନିର୍ବିଘ୍ନ ସମ୍ପର୍କ ପ୍ରତିଷ୍ଠା ହେବ । ସନ୍ଦେଶ (ସୋଽହମ୍) ନିତ୍ୟ ଉପଲବ୍ଧ । ଏହା କେବେ ହେଲେ ବି ବନ୍ଦ ହୁଏ ନାହିଁ । (ନା ସେ କେତେବେଳେ ତୁମକୁ ପରିତ୍ୟାଗ କରନ୍ତି ନା ତୁମେ ଗୁରୁ(ଆତ୍ମା)ଙ୍କ ଠାରୁ କେତେବେଳେ ଦୂର ହୋଇପାରିବ ?)

ତୁମର ମନ ବହିର୍ମୁଖୀ । ଏଇ ପ୍ରବୃତ୍ତି ଯୋଗୁ ମନ ବସ୍ତୁଗୁଡ଼ିକୁ ବାହାରେ ଦେଖେ ତଥା ସେହିଭଳି ଗୁରୁଙ୍କୁ ବି ବାହାରେ ଦେଖିଥାଏ । ବସ୍ତୁତଃ ସତ୍ୟ ଏହା ଠାରୁ ଭିନ୍ନ । ଗୁରୁ ହିଁ ଆତ୍ମା । ମନ ଅନ୍ତର୍ମୁଖ ହେଲେ ଜଣାପଡ଼ିବ ଯେ ଗୁରୁ ହେଉଛନ୍ତି ତୁମର ଆତ୍ମା, ଏହା ବ୍ୟତୀତ ଆଉ କିଛି ନୁହେଁ ।

ତୁମେ କ'ଣ ଦେହ ନାଁ, ତୁମେ ଆତ୍ମା । ସିଏ ସବୁ ବସ୍ତୁଗୁଡ଼ିକରେ ଏବଂ ସମସ୍ତ ବ୍ରହ୍ମାଣ୍ଡ ରୂପରେ ବିଦ୍ୟମାନ । ଆତ୍ମାକୁ ଛାଡ଼ି ଅଲଗା କିଛି ହେଲେ ରହିପାରିବ ନାହିଁ । ପୁନଶ୍ଚ ତୁମେ ଗୁରୁଠାରୁ ଅଲଗା ହୋଇ କିପରି ରହିପାରିବ, ଯେତେବେଳେ କି ଗୁରୁ ହେଉଛନ୍ତି ତୁମର ଆତ୍ମା । କଳ୍ପନା କର ଯେ ତୁମର ଦେହ ପୃଥକ-ପୃଥକ ସ୍ଥାନରେ ଭ୍ରମଣ କରୁଥିଲେ କ'ଣ ସେ ଆକାଶ ଠାରୁ ନା ଆତ୍ମା ଠାରୁ ପୃଥକ ହୋଇପାରିବ ? ସେହିପରି ତୁମେ (ଆତ୍ମା) ଠାରୁ କେବେହେଲେ ଅଲଗା ହୋଇପାରିବ ନାହିଁ । ଏମିତି କ'ଣ କୌଣସି ମୁହୂର୍ତ୍ତ ଅଛି ଯେତେବେଳେ ତୁମେ ଆତ୍ମାକୁ ସାକ୍ଷାତ୍ କରୁନାହଁ ? ତୁମେ ସବୁବେଳେ ଆତ୍ମା, ଅଲଗା ନୁହେଁ । ଯେପର୍ଯ୍ୟନ୍ତ ତୁମେ ନିଜକୁ ଅଲଗା ଶରୀର ବୋଲି ମାନୁଛ, ସେପର୍ଯ୍ୟନ୍ତ ତୁମକୁ ଏହି ଜ୍ଞାନ ପ୍ରଦାନ କରିବା ପାଇଁ ଗୁରୁଙ୍କ ଆବଶ୍ୟକତା ରହିଛି ଯେ ତୁମେ ଦେହର ସୀମା ଭିତରେ ବନ୍ଧା ହୋଇନାହଁ, ତୁମେ ହେଉଛ ବ୍ୟାପକ ଅପରିଚ୍ଛିନ୍ନ ଆତ୍ମା । ସଦ୍‌ଗୁରୁଙ୍କ ଉପଦେଶ କ'ଣ ? ତାହା ହେଉଛି ମନୁଷ୍ୟ ଭିତରେ ବିଦ୍ୟମାନ ଥିବା ସମସ୍ତ ଭ୍ରାନ୍ତି ଏବଂ ଅହଂକାରର ନାଶ, ଦହନ, ଛେଦନ ।

**ପ୍ରଶ୍ନ ୩୦– ଜଗତ ସତ୍ୟ ନା ମିଥ୍ୟା ?**

ଉତ୍ତର – ଏହି ଜଗତ ଯାହାକୁ ମିଥ୍ୟା ବା କଳ୍ପିତ ବୋଲି କୁହାଯାଉଛି, ଏହା କାହାଦ୍ୱାରା ଉଦ୍ଭାସିତ ହେଉଅଛି ? ଜଗତ–ଜଗତକୁ, ଅନାତ୍ମା–ଅନାତ୍ମାକୁ ତ ଉଦ୍ଭାସିତ କରିପାରିବ ନାହିଁ । ଜଗତ କୌଣସି ଚୈତନ୍ୟ ଦ୍ରଷ୍ଟାକୁ ହିଁ ଉଦ୍ଭାସିତ ହୋଇପାରିବ । ଚୈତନ୍ୟ ବିନା ଜଗତର ଅସ୍ତିତ୍ୱକୁ ଜଗତ ପ୍ରଭାବିତ କରିପାରିବ ନାହିଁ । ଅର୍ଥାତ୍ ଆତ୍ମା ହିଁ ସତ୍ୟ । ଆତ୍ମା ରୂପରେ ଦୃଶ୍ୟ ପଦାର୍ଥ ସତ୍ୟ ତଥା ଆତ୍ମା ଠାରୁ ଭିନ୍ନ ଜଗତ କଳ୍ପିତ । ଜଗତର ଦ୍ରଷ୍ଟା ତୁମେ ଆତ୍ମା ହିଁ ସତ୍ୟ ।

**ପ୍ରଶ୍ନ ୩୧– 'ମୁଁ ହିଁ ଈଶ୍ୱର' ଏମିତି ସଂକଳ୍ପ କରିବା କ'ଣ ଉଚିତ୍ ?**

ଉତ୍ତର – ସଂକଳ୍ପ ବିନା ବି ତୁମେ ଅଛ । ତୁମର ସଂକଳ୍ପ ତୁମ ଠାରୁ ଅଲଗା ନୁହେଁ । ତୁମେ ଏମିତି ସଂକଳ୍ପ କରନା ଯେ 'ମୁଁ ଅଛି' 'ମୁଁ ହିଁ ଈଶ୍ୱର' ବରଂ ଏହିଭଳି ଅନୁଭବ କର ଯେ 'ମୁଁ ଅଛି ।' ଏହି ଚିନ୍ତନ କେବେ ହେଲେ କରନାହିଁ ଯେ 'ମୁଁ ଅଛି' । ଚିନ୍ତନ, ଜପ, ଧ୍ୟାନ, ଏସବୁ ଅନ୍ୟ ପାଇଁ ହୋଇଥାଏ । ଅନୁଭବ କର, ଜାଣ 'ମୁଁ ହିଁ ଈଶ୍ୱର', ବିଚାର କରନାହିଁ 'ମୁଁ ହିଁ ବ୍ରହ୍ମ' । 'ଅସ୍ତିତ୍ୱ ହିଁ ମୁଁ ଅଛି' ଏହାର ଅଭିପ୍ରାୟ ହେଉଛି ଏୟା ଯେ ମନୁଷ୍ୟ ଆତ୍ମା ଭାବରେ ରହିବା ଉଚିତ୍ । ସିଏ ସର୍ବଦା କେବଳ ଆତ୍ମା ବ୍ୟତୀତ ଅନ୍ୟ କିଛି ନୁହେଁ, ତଥାପି ସେ ଜିଜ୍ଞାସା କରୁଛି ଯେ 'ମୁଁ କିଏ ?' ଯେ ମାୟାରେ ଭ୍ରମିତ ହୋଇଛି ସେହି ଅଜ୍ଞାନୀ ହିଁ ଜିଜ୍ଞାସା କରିଥାଏ ଯେ ମୁଁ କିଏ ? ଯାହାର ସଦ୍‌ଗୁରୁ ତଥା ଆତ୍ମସାକ୍ଷାତ୍କାର ମୁଁ ଭାବରେ ଜ୍ଞାନ ହୋଇଗଲା, ସେ କେବେହେଲେ ପ୍ରଶ୍ନ କରିବ ନାହିଁ । ଆତ୍ମାର ଅନାତ୍ମା ସହିତ ମିଥ୍ୟା ତାଦାତ୍ମ୍ୟ ହିଁ ତୁମର ପ୍ରଶ୍ନକର୍ତ୍ତା 'ମୁଁ କିଏ ?' ଆତ୍ମା ହୋଇ ବି ଆତ୍ମାରେ ସଂଶୟ ହୋଇଥାଏ କେବଳ ଦେହ ସହିତ ମିଥ୍ୟା ଅହଂକାର କରିଥିବାରୁ । ଏହା ହେଉଛି ଅଜ୍ଞାନ । ତୁମେ ହିଁ ଆତ୍ମା । ଆତ୍ମ ଭାବରେ ରୁହ । 'ମୁଁ ହିଁ ବ୍ରହ୍ମ' 'ମୁଁ ହିଁ ଆତ୍ମା', 'ମୁଁ ହିଁ ଦ୍ରଷ୍ଟା' ଏହିଭଳି ଚିନ୍ତନ, ଜପ କେବେ ହେଲେ କରନାହିଁ ।

**ପ୍ରଶ୍ନ ୩୨– ମୁଁ ଧ୍ୟାନ କରୁଛି କିନ୍ତୁ ମୋତେ ଶାନ୍ତି ଏବଂ ଏକାଗ୍ରତା କାହିଁକି ପ୍ରାପ୍ତ ହେଉନାହିଁ ?**

ଉତ୍ତର – ମୁଁ ଏକାଗ୍ର, ଶାନ୍ତ ହୋଇପାରିଲି ନାହିଁ, ମୋର ଧ୍ୟାନ ହୋଇପାରୁ ନାହିଁ–ଏହି ବିଚାର ହିଁ ତୁମର ଧ୍ୟାନ, ଶାନ୍ତି ତଥା ଏକାଗ୍ରତାରେ ବାଧା ସୃଷ୍ଟି କରୁଛି । ତୁମର ସ୍ୱଭାବ ହେଉଛି ଶାନ୍ତ, ଏକାଗ୍ର ତଥା ଆନନ୍ଦ ସ୍ୱରୂପ । ବିଚାର, ସାକ୍ଷାତ୍କାର ମାର୍ଗରେ ପ୍ରତିବନ୍ଧକ । ଅନାତ୍ମା ଠାରୁ ଦୃଷ୍ଟି ହଟାଇ ନେଇ ଆତ୍ମା ଆଡ଼କୁ ମନ

ବୁଦ୍ଧିକୁ ଲଗାଇବା ପାଇଁ ପ୍ରଥମେ ବିଚାର ଆବଶ୍ୟକ କିନ୍ତୁ ଆତ୍ମ ସାକ୍ଷାତ୍କାର ହେଲା ପରେ ଆତ୍ମ ଭାବରେ ରହିବା ଉଚିତ । ଧ୍ୟାନ, ନିଦିଧ୍ୟାସନ ବାଧାଗୁଡ଼ିକୁ ହଟାଇବା ପାଇଁ ସାଧନ ବତାଇ ଦିଆଯାଇଥାଏ, ଆତ୍ମୋପଲବ୍ଧି ପାଇଁ ନୁହେଁ । ଆତ୍ମା ଠାରୁ କ'ଣ କେହି ଅଲଗା ? ନାଁ । ଆତ୍ମାର ସତ୍ୟ ସ୍ୱଭାବ ହେଉଛି ଶାନ୍ତ ଏବଂ ଆନନ୍ଦ ।

ତୁମେ ନିଜେ ହିଁ ଆତ୍ମା । ନିଜେ ନିଜକୁ ଭୁଲିପାରିବ ନାହିଁ କିମ୍ବା ଧ୍ୟାନ କରିପାରିବ ନାହିଁ । ଯଦି ଧ୍ୟାନ କରିବାକୁ ପଡୁଥାଏ ବା ଭୁଲି ହୋଇଯାଉଥାଏ ତେବେ ଦୁଇଟି ଆତ୍ମା ଅଛି ବୋଲି ମାନିନେବାକୁ ପଡ଼ିବ, ଯାହା ଫଳରେ ଗୋଟିଏ ଅନ୍ୟକୁ ଭୁଲିଯିବ ଏବଂ ଗୋଟିଏ ଅନ୍ୟକୁ ଧ୍ୟାନ ଦ୍ୱାରା ସ୍ମରଣ କରିବ । ଏହା ସବୁ ମୂର୍ଖତା କେବଳ । ତୁମେ ହେଉଛ ଅଦ୍ୱିତୀୟ ଅସଙ୍ଗାତ୍ମା ।

ତୁମର ଭୁଲିବାରେ ବି ତୁମର ଉପସ୍ଥିତି ରହିଛି । ଏହା ଜ୍ଞାନ ସନ୍ନିହିତ । କାରଣ ତୁମର ଜ୍ଞାନ ଅଛି ଯେ ତୁମେ ବିସ୍ମୃତ ହୋଇଗଲ । ନଚେତ୍ ତୁମେ ବିସ୍ମରଣ କଥା କେମିତି କହିପାରନ୍ତ ?

କୌଣସି ବସ୍ତୁର ଚିନ୍ତନ ସେତେବେଳେ ସମ୍ଭବ ଯେତେବେଳେ ଆମେ ତା' ଠାରୁ ପୃଥକ୍ ହେଉଚେ । ଆମେ ଶୁଦ୍ଧ ଜ୍ଞାନ ଠାରୁ ଅଲଗା ହୋଇ କେବେ ରହିପାରିବା ନାହିଁ । ବସ୍ତୁତଃ ଆମେ ସେୟା । ନିଜର ସ୍ୱରୂପକୁ ଏହା ବା ତାହା ଭାବରେ କାହିଁକି କଳ୍ପନା କରୁଛ ?

**ପ୍ରଶ୍ନ ୩୩– ଈଶ୍ୱର ଆରାଧନା କେମିତି କରିବୁ ?**

**ଉତ୍ତର** – ଈଶ୍ୱର ଆରାଧନା ପାଇଁ 'ମୁଁ' ଅବଶ୍ୟ ରହିବା ଉଚିତ । ମୁଁ ଏଠାରେ ତଥା ଆରାଧନା ପାଇଁ ଈଶ୍ୱର ଦୃଶ୍ୟ ରୂପରେ ସେଠାରେ ରହିବା ଉଚିତ । ଯାହା ଆରାଧନା ଦ୍ୱାରା ପ୍ରକଟ ହେବ ତାହା ସତ୍ୟ ହୋଇପାରିବ ନାହିଁ । ସତ୍ୟ ଯଦି ଆଜି, ଏଇଠି ଏବଂ ତୁମ ରୂପରେ ଅଛି, ତେବେ ତାହା ସତ୍ୟ । ଯାହା ଆଜି, ଏବେ, ଆମ ରୂପରେ ନଥିବ ତାହା ବି ସତ୍ୟ ହେବନାହିଁ । 'ମୁଁ'ର ଉପସ୍ଥିତି ସବୁ ସମୟରେ, ସବୁ ଅବସ୍ଥାରେ ବିଦ୍ୟମାନ । ଯାହା ଅତି ନିକଟରେ ଅଛି, ତାହାକୁ ଖୋଜିନିଅ । ତାହା ନିତ୍ୟ ଏବଂ ସତ୍ୟ । ଧ୍ୟାନ ଦ୍ୱାରା ପାଇବାକୁ ଥିବା ଅବସ୍ଥା ସତ୍ୟ ନୁହେଁ ।

ତୁମେ ନିଜେ ହିଁ ସେହି ସତ୍ୟ ତତ୍ତ୍ୱ । ତୁମେ ଆତ୍ମା ଠାରୁ ଅଲଗା ନୁହଁ, ଯାହାର ଧ୍ୟାନ କରିପାରିବ । ଧ୍ୟାନ କରିବା ପାଇଁ, କର୍ମ କରିବା ପାଇଁ ତୁମକୁ ଅସ୍ତିତ୍ୱବାନ ହେବାକୁ ପଡ଼ିବ । ନିଜ ଅସ୍ତିତ୍ୱକୁ ସାକ୍ଷାତ୍ କର ।

**ପ୍ରଶ୍ନ ୩୪ – ମୋତେ ପୂର୍ଣ୍ଣ ଭାବରେ ଆତ୍ମା କିପରି ସ୍ପଷ୍ଟ ହୋଇପାରିବ ?**

ଉତ୍ତର – ଏହି ବିଚାର କରିବା ପାଇଁ ବି ତୁମକୁ ଆତ୍ମା ହେବାକୁ ପଡ଼ିବ, ଅସ୍ତିତ୍ୱବାନ ହେବାକୁ ପଡ଼ିବ, କାରଣ ଜଡ଼ ଦେହ, ଇନ୍ଦ୍ରିୟ, ପ୍ରାଣ, ଅନ୍ତଃକରଣ ତୁମ ବିନା କୌଣସି ସଂକଳ୍ପ ଉଠେଇ ପାରିବେ ନାହିଁ । ତୁମେ କୌଣସି ପ୍ରକାର ବିଚାରକୁ ଗ୍ରହଣ କର–ତ୍ୟାଗ କରନା କାହିଁକି କିନ୍ତୁ ସେଥିରେ ତୁମର ରହିବା ଜରୁରୀ । ବିଚାର ପରିବର୍ତ୍ତନଶୀଳ କିନ୍ତୁ ତୁମେ ସମସ୍ତ ପରିବର୍ତ୍ତନ ଗୁଡ଼ିକର ପ୍ରକାଶକ, ଅଚଳ, ସାକ୍ଷୀ ଆତ୍ମା ହୋଇରହିବ । ଏଣୁ ପରିବର୍ତ୍ତନଶୀଳ ଅନାତ୍ମ ବିଚାରଗୁଡ଼ିକୁ ତ୍ୟାଗ କରି ଆତ୍ମାରେ ସ୍ଥିର ରହ । ଏହି ବିଚାର ହେଉଛି ତୁମର ବନ୍ଧନ ଯେ, ମୋର ଏମିତି ହେଉନାହିଁ, ମୋର ସେମିତି ହେଉନାହିଁ, ମୋର ଏମିତି କାହିଁକି ହେଉଛି ? ତେଣୁ ଅନାତ୍ମ ଚିନ୍ତନକୁ ତ୍ୟାଗକର ଏବଂ ଆତ୍ମଭାବରେ ରହ– ଏହା ହେଉଛି ମୁକ୍ତି ।

**ପ୍ରଶ୍ନ ୩୫– ମୋ ଉପରେ ପରମାତ୍ମାଙ୍କ ଅନୁଗ୍ରହ କିପରି ହେବ ?**

ଉତ୍ତର – ପ୍ରସାଦ ତୁମ ପାଖରେ ସଦାବେଳେ ଅଛି । ତୁମକୁ କେବଳ ଏତିକି କରିବାକୁ ହେବ ଯେ ତୁମେ ଅନାତ୍ମ ଦେହ ସହିତ 'ମୁଁ' ଭାବ କେବେ ହେଲେ ରଖନାହିଁ । ତୁମେ ନିଜକୁ ବହିର୍ମୁଖ ମନ ସହିତ ସଂଯୁକ୍ତ କରି ନିଜକୁ ଦେହ ଭାବରେ କର୍ତ୍ତା–ଭୋକ୍ତା, ଦୁଃଖୀ–ସୁଖୀ, ଅଜ୍ଞାନ ବୋଲି ଜାଣନାହିଁ । ସଦାବେଳେ ଦ୍ରଷ୍ଟା, ସାକ୍ଷୀ, ଆତ୍ମା ହୋଇ ରହ । ସମସ୍ତଙ୍କ ଉପରେ କୃପା ଦାନକାରୀ, ତୁମେ କାହାଠାରୁ କୃପା ଭିକ୍ଷା ପାଇଁ ଇଚ୍ଛା କରୁଛ ? ତୁମେ ନିଜ ଉପରେ ହିଁ କୃପାକର, କାହା ଠାରୁ ଆଶା କରି ରହନାହିଁ । ଅନୁଗ୍ରହ ହିଁ ଆତ୍ମା, ଯାହା ସବୁ ମୁହୂର୍ତ୍ତରେ ତୁମ ଉପରେ ବର୍ଷା ହେଉଛି । ଏହା ଆତ୍ମା, ଅନ୍ୟ କିଛି ବସ୍ତୁ ନୁହେଁ ଯେ ତାହାର ପ୍ରାପ୍ତି କାହାର କୃପା, ପ୍ରସାଦ, ଅନୁଗ୍ରହ ଦ୍ୱାରା ହେବ, କେବଳ ଏହାର ଅସ୍ତିତ୍ୱର ବୋଧ ହେବା ଆବଶ୍ୟକ । ସାକ୍ଷାତ୍‌କାର ନିତ୍ୟ ସିଦ୍ଧ, ତାହା ଏବେ ଏବଂ ଏହି ଠାରେ । ଯାହା ବର୍ତ୍ତମାନ ନାହିଁ କାଳାନ୍ତରରେ ହେବ, ତାହା କେବେ ହେଲେ ନିତ୍ୟ ହେବନାହିଁ ଏବଂ ସେହିପରି ଅସ୍ଥାୟୀ ଅସ୍ତିତ୍ୱ ପଦାର୍ଥ, ପାଇବା ଯୋଗ୍ୟ ହୋଇ ବି ରହେ ନାହିଁ ।

ଅନୁଗ୍ରହ ଆତ୍ମା ପ୍ରାରମ୍ଭରେ ଅଛି, ମଧ୍ୟରେ ଅଛି ତଥା ଅନ୍ତରେ ଅଛି ।

**ଅହମାତ୍ମା ଗୁଡ଼ାକେଶ ସର୍ବଭୂତାଶୟ ସ୍ଥିତିଃ**
**ଅହଂ ଆଦିଶ୍ଚ ମଧ୍ୟଂ ଚ ଭୂତାନାମନ୍ତ ଏବ ଚ''**

ଅନୁଗ୍ରହ ହିଁ ଆତ୍ମା । ବାହାରୁ ମନକୁ ହଟାଇ ନେଇ ଭିତର ଆଡକୁ ଠେଲିନେବା ତଥା ଭିତରେ ବସି ତାକୁ ନିଜ ଆଡକୁ ଟାଣିବା ହିଁ ଗୁରୁଙ୍କ ଅନୁଗ୍ରହ ।

**ପ୍ରଶ୍ନ ୩୬– କ'ଣ ମୌନତା ଦ୍ୱାରା କିଛି ଲାଭ ହୁଏ ?**

**ଉତ୍ତର –** ପ୍ରକୃତ ସଦ୍‌ଗୁରୁଙ୍କ ପାଖରେ ବସିଲେ ମନରେ ଏକ ଅପୂର୍ବ ଶାନ୍ତି ଅନୁଭବ ହୋଇଥାଏ । ମୌନତା ହେଉଛି ସର୍ବୋଚ୍ଚ ଆରାଧନା ଏବଂ ଉପଦେଶ ।

ଘଣ୍ଟାଏ ପର୍ଯ୍ୟନ୍ତ ବଳିଷ୍ଠ ଉଗ୍ର ପ୍ରବଚନ ଶୁଣିଲା ପରେ ବି ଯଦି ଶ୍ରୋତା ମନକୁ ପରିବର୍ତ୍ତନ କରିବାର କୌଣସି ପ୍ରେରଣା ଜାଗ୍ରତ ନ ହେଲା ଏବଂ କୌଣସି ଲୋକ ପ୍ରଭାବିତ ନ ହୋଇ ଚାଲିଗଲା ତେବେ ତୁମେ ସେହି ପ୍ରବଚନକୁ କ'ଣ କହିବ ? ତାହାର ତୁଳନା ଏମିତି ଜଣେ ଲୋକ ସହିତ କର ଯେ ଜଣେ ପବିତ୍ର ଆତ୍ମା ପାଖରେ ବସିଲା ପରେ ଯାହାଙ୍କର ଜୀବନରେ ପରିବର୍ତ୍ତନ ହେଉଥିବ, ସେ ସମ୍ପୂର୍ଣ୍ଣ ଭାବରେ ବଦଳି ଯାଉଥିବ ।

କିଛି ହେଲେ କରିବାକୁ ନାହିଁ । ତୁମେ ହିଁ ନିତ୍ୟ, ଶୁଦ୍ଧ, ବୁଦ୍ଧ, ମୁକ୍ତାତ୍ମା । ତୁମର ଏହି ଅବସ୍ଥା ସହଜ ତଥା ନିତ୍ୟ, କେବଳ ନିଜର ଦେହଭାବ, କର୍ତ୍ତାଭାବର ଅଭିମାନକୁ ହିଁ ତ୍ୟାଗ କରିବାକୁ ହେବ । କୌଣସି ନୂଆ ବସ୍ତୁ ପ୍ରାପ୍ତି କଲାଭଳି ଏଇ ଆତ୍ମତତ୍ତ୍ୱ ନୁହେଁ । ତୁମେ ହିଁ ଆତ୍ମା । ଯାହା ଏବେ ଏଇଠି ବିଦ୍ୟମାନ, ତାହା ହିଁ ସତ୍ୟ । ସିଏ ହିଁ ଆତ୍ମା । ଯାହା ବର୍ତ୍ତମାନ ଏଇଠାରେ ତୁମ ରୂପରେ ନାହିଁ, ତାହା ସତ୍ୟ ନୁହେଁ ।

**ପ୍ରଶ୍ନ ୩୭– ମୁଁ ଏକାନ୍ତରେ ଜପ କରିବାକୁ ଚାହୁଁଛି । ଏହି ବିଚାର ଆସିବା କ'ଣ ପୁଣ୍ୟର ଫଳ ?**

**ଉତ୍ତର–** ଏକାନ୍ତର ଅର୍ଥ ହେଉଛି ଆତ୍ମାରେ ସ୍ଥିର ହୋଇ ରହିବା । ପୃଥିବୀରେ ସେ ଏକୁଟିଆ, ତାହା ବ୍ୟତୀତ ଅନ୍ୟ କିଛି ହେଲେ ନାହିଁ ।

**''ନେହ ନାନାସ୍ତି କିଞ୍ଚନ''**

ତେଣୁ ଗୋଟିଏ ପ୍ରକାରର ବାତାବରଣକୁ ତ୍ୟାଗ କରି କୌଣସି ନୂଆ ଜାଗା, ନୂଆ ବାତାବରଣକୁ ଯିବା ପାଇଁ ଇଚ୍ଛା କରନାହିଁ କିମ୍ବା କଳ୍ପନା ଜାଲରେ ପଡନାହିଁ । ତୁମେ ଆତ୍ମା ଏବେ, ଏଇଠି, ଏକାନ୍ତରେ ହିଁ ଅଛ । ଗୃହ ତ୍ୟାଗକରି ଯିବାର ଇଚ୍ଛା ହିଁ ବାଧା । ଆତ୍ମା ହିଁ କେବଳ ଅଛି । ଆତ୍ମା ହିଁ ସର୍ବତ୍ୟାଗୀ । ସୁଷୁପ୍ତିରେ ତୁମେ ତ୍ୟାଗୀ, ସନ୍ୟାସୀ, ଏକାନ୍ତବାସୀ, ନିତ୍ୟ ହୋଇ ରହିଥାଅ । ସେଠାରେ କିଛି ହେଲେ ନାହିଁ । ଏହି ସଂସାର ତ ମନର ରଚନା, ଯାହା ସ୍ୱପ୍ନ ଭଳି କଳ୍ପିତ । ସର୍ବତ୍ର ଜଣେ ସାକ୍ଷୀ ଆତ୍ମା ବ୍ୟତୀତ ଆଉ କିଛି ନାହିଁ ।

ବିଚାର କର । ଏଇ ଏକାନ୍ତକୁ ଯିବାର, ଗୃହତ୍ୟାଗ କରିବାର ବାସନା କାହାର ଉଦୟ ହେଲା ? ଶରୀରର ନା ଆତ୍ମାର ? ନା ମନରେ ଯଦି ତୁମେ ଆତ୍ମ

ଭାବରେ ରହିବ, ତେବେ ଆତ୍ମା ଠାରୁ ଅଲଗା ଭାବରେ କିଛି ଦେଖାଯିବ ନାହିଁ । ସେତେବେଳେ ସଂଯମ ଇତ୍ୟାଦିର ଆବଶ୍ୟକତା ବି ରହିବ ନାହିଁ ।

**ପ୍ରଶ୍ନ ୩୮– ସୁଷୁପ୍ତି ଅବସ୍ଥାରେ ବାହାର–ଭିତରର ବୋଧ କାହିଁକି ରହେ ନାହିଁ ?**

**ଉତ୍ତର** – ଯଦି ସେ ସମୟରେ କିଛି ହେଉଥାନ୍ତା, ତେବେ ସ୍ମରଣ ରହନ୍ତା । ମାତ୍ର ସେଠାରେ କିଛି ହେଲେ ନଥିଲା, ସେଥିପାଇଁ ସେଠାକାର କଥା କିଛି ହେଲେ ସ୍ମରଣ ହୁଏନାହିଁ । ମାତ୍ର ତୁମେ ସେହି ସମୟରେ ନିଜର ଅସ୍ତିତ୍ୱକୁ ସ୍ୱୀକାର କରୁଛ ଯେ ମୁଁ ସୁଖରେ ଶୋଇଥିଲି ଏବଂ କିଛି ଜଣାପଡ଼ିଲା ନାହିଁ । ସେହି ଆତ୍ମା ଏବେ କହୁଛି । ଯେଉଁ ଆତ୍ମା ସୁଷୁପ୍ତି ଅବସ୍ଥାରେ ଦେହଭାବ, ଦ୍ୱୈତଭାବ ରହିତ ଥିଲା ବର୍ତ୍ତମାନ ମନର ସଂଯୋଗ ଦ୍ୱାରା ସେ ଭେଦ ଏବଂ ଦ୍ୱୈତଭାବ ଯୁକ୍ତ ନାନାତ୍ୱ ଦେଖୁଅଛି । ବାସ୍ତବରେ ସତ୍ତା କେବଳ ଗୋଟିଏ । ଯାହାଙ୍କ ଠାରେ ଦୃଶ୍ୟ ପଦାର୍ଥଗୁଡ଼ିକର ଜ୍ଞାନ ନାହିଁ ସେ ହିଁ ଶୁଦ୍ଧ ଚୈତନ୍ୟ, ତାହା ହିଁ ଆନନ୍ଦର ଅବସ୍ଥା । ଯାହାକୁ ସମସ୍ତେ ସ୍ୱୀକାର କରିଥାନ୍ତି । ସୁଷୁପ୍ତିରେ ଏସବୁ ଧାରଣା ନଥିଲା ଯାହା ଜାଗ୍ରତକୁ ଆସିଲା ପରେ ଉଦୟ ହେଉଛି । ଏହି ଧାରଣା ଅହଂବୃତ୍ତିର ଉଦୟ ହେଲେ ହିଁ ଉଠିଥାଏ । ଅହଂବୃତ୍ତି ପୂର୍ବରୁ ସମସ୍ତ ଭେଦର ଅଭାବ ଥିଲା । ତେଣୁ ତୁମେ ହେଉଛ ଦେଶ କାଳର ଉର୍ଦ୍ଧ୍ୱରେ, ନିତ୍ୟ, ଅଖଣ୍ଡାତ୍ମା ।

ସୁଷୁପ୍ତିରୁ ଉଠିଲା ପରେ ତଥା ଦୃଶ୍ୟ ଜଗତକୁ ଦେଖିବା ପୂର୍ବରୁ ଯେଉଁ ଏକ ଜାଗୃତିର ସ୍ଥିତି ଅଛି ତାହା ହେଉଛି ତୁମର ନିଜ ସ୍ୱରୂପ, ଏହା ଜାଣିବା ଆବଶ୍ୟକ । ତୁମେ ସେହି ଆତ୍ମା । ଏହା ଇନ୍ଦ୍ରିୟର ବିଷୟ ନୁହେଁ, ଇନ୍ଦ୍ରିୟମାନଙ୍କ ଦ୍ୱାରା ଅନୁଭୂତିର ବିଷୟ ନୁହେଁ । ତୁମେ ହିଁ ସେ । କିଏ କାହାର ଅନୁଭବ କରିବ ? ତୁମର ଚେଷ୍ଟା କେବଳ ଏତିକି ହେଉ ଯେ ତୁମେ, ନିଜକୁ ଅନାତ୍ମ ଚିନ୍ତନ ସଂକଳ୍ପଗୁଡ଼ିକ ପ୍ରତି ବ୍ୟାକୁଳ ହେବାକୁ ଦିଅନାହିଁ ।

**ପ୍ରଶ୍ନ ୩୯– ଜ୍ଞାନ ହେଲାପରେ କଷ୍ଟ କାହିଁକି ହୁଏ ?**

**ଉତ୍ତର** – କଷ୍ଟ ସମ୍ବନ୍ଧରେ ଜ୍ଞାନ ନହେବା ଆତ୍ମଜ୍ଞାନର ଲକ୍ଷଣ ନୁହେଁ । ଡାକ୍ତର ଦ୍ୱାରା ଅପରେଶନ କରିବା ସମୟରେ କଷ୍ଟ ନ ହେଲେ କ'ଣ ସେହି ଅବସ୍ଥାକୁ ଜ୍ଞାନ କୁହାଯାଇପାରିବ ? କଷ୍ଟ ପ୍ରତି ଅନଭିଜ୍ଞ ରହିବା ଅର୍ଥ ଜ୍ଞାନ ହୋଇପାରିବ ନାହିଁ । ବିଚାର କର । କଷ୍ଟ କାହାକୁ ହୁଏ ? କଷ୍ଟ ହୁଏ ଦୃଶ୍ୟକୁ । ଯେ ଜାଣିଲା ସେ ଦୃଶ୍ୟ ଶରୀର ଏବଂ ଏଥିରେ ହେବାକୁ ଥିବା ମାନସିକ କଷ୍ଟ ଠାରୁ ସବୁବେଳେ ପୃଥକଖ ହେଉଛି କେବଳ ସାକ୍ଷୀ ଏବଂ ତାହା ହିଁ ତୁମେ । ସମସ୍ତ ପୀଡ଼ା କେବଳ

ଦେହ ସହିତ ଅହଂବୁଦ୍ଧି କରିବା ଯୋଗୁ ହୋଇଥାଏ । ଦେହ ଚେତନାର ଅଭାବରେ ଏହା ହୁଏନାହିଁ । ମନକୁ ଦେହର ବୋଧ ନ ରହିଲେ ସୁଖ-ଦୁଃଖ, ଭୋକ-ଶୋଷ, ଥଣ୍ଡା-ଗରମର ବୋଧ କେବେହେଲେ ରହିବ ନାହିଁ ।

**ପ୍ରଶ୍ନ ୪୦– ମୋତେ କେବେ ମୁକ୍ତି ମିଳିବ ?**

**ଉତ୍ତର** – ମୁକ୍ତି, ଆତ୍ମା, ଆନନ୍ଦ, ଏକାନ୍ତ ଇତ୍ୟାଦି ଗୋଟିଏ ଆତ୍ମାର ପର୍ଯ୍ୟାୟବାଚୀ ନାମ । ଆତ୍ମା, ମୁକ୍ତି ଏବେ ଏଇଠାରେ ରହିଛି । ଯେ କହେ ଯେ, ମୁଁ ତାହାର ଅନୁଭବ କରୁନାହିଁ, ସେ ବି ଆତ୍ମା ହୋଇଥିବାରୁ ଏମିତି କହିପାରୁଛି ଯେ ମୁଁ ଆତ୍ମାର ଅନୁଭବ କରୁନାହିଁ । ଅନାତ୍ମା ଦ୍ୱାରା ଏହିଭଳି ନିର୍ଣ୍ଣୟ ସମ୍ଭବ ନୁହେଁ । ବାସ୍ତବତା ହେଉଛି ଏୟା ଯେ କୌଣସି ବନ୍ଧନ ନାହିଁ କିନ୍ତୁ କେବଳ ମୁକ୍ତି ଅଛି । ମୁକ୍ତି ଭବିଷ୍ୟତରେ ପ୍ରାପ୍ତ ହେବାକୁ ଥିବା ବସ୍ତୁ ଭଳି ନୁହେଁ । ମିଥ୍ୟାକୁ ପରିତ୍ୟାଗ କରିବା ଏବଂ ସତ୍ୟ ଆତ୍ମାରେ ରମଣ କରିବା ହିଁ ମୁକ୍ତି । ମୋକ୍ଷ ନାମକ କୌଣସି ପଦାର୍ଥ ନାହିଁ ଯାହାକୁ ବାହାରେ ଖୋଜାଯାଇ ପାରିବ । ମୋକ୍ଷ ଅନ୍ତରସ୍ଥ । ମୋକ୍ଷ ଆତ୍ମା । ମୋକ୍ଷ ହେଉଛି ତୁମେ ନିଜେ ।

ମନ ଚଞ୍ଚଳ ଥିଲେ ଏକାନ୍ତ ଜଙ୍ଗଲ ବି ବଜାର ଭଳି ହୋଇଯିବ । ଯଦି ମନ ଶାନ୍ତ ଅଛି, ତେବେ ବଜାର ବି ଏକାନ୍ତ ଜଙ୍ଗଲ ହୋଇଯିବ । ଆଖି ବନ୍ଦ କରିବାର କ'ଣ ପ୍ରୟୋଜନ ? ମନକୁ ମୌନ ହେବାର ଅଛି । ମନର ଚକ୍ଷୁ ବନ୍ଦ ହେଉ ହେଉ ଜଗତ ଶୂନ୍ୟ ହୋଇଯାଏ ।

ସୁଖ-ଦୁଃଖ ହେଉଛି ପୂର୍ବକୃତ କର୍ମର ପରିଣାମ, ବର୍ତ୍ତମାନ କର୍ମର ନୁହେଁ । ଧୈର୍ଯ୍ୟର ସହିତ ତାହାକୁ ଯାଉଥିବାର-ଆସୁଥିବା ଦେଖିଚାଲିବା ଉଚିତ ।

**ପ୍ରଶ୍ନ ୪୧– ମିଥ୍ୟା ମୁଁ ଏବଂ ସତ୍ୟ ମୁଁ ଭିତରେ ପ୍ରଭେଦ କ'ଣ ?**

ଉତ୍ତର – ଶାଶ୍ୱତ ମୁଁ ଅସୀମିତ ଆକାଶ ପରି ତଥା ଅହଂକାର ରୂପୀ ମିଥ୍ୟା 'ମୁଁ' ସେହି ଆକାଶରେ ଚିକ୍‌ମିକ୍ କରୁଥିବା ତାରା ପରି । ଅଥବା ସତ୍ୟ 'ମୁଁ' ସମୁଦ୍ର ପରି ଏବଂ ମିଥ୍ୟା 'ମୁଁ' ଏଥିରେ ଗୋଟିଏ ପାଣି ଫୋଟକା ପରି, ଯାହାକୁ ଜୀବ କୁହାଯାଏ । ପାଣି ଫୋଟକା ବି ଜଳ । ଅଥବା ସତ୍ୟାତ୍ମା ଜଳ ଏବଂ ଜୀବାତ୍ମା ବରଫ ଭଳି । ଯେତେବେଳେ ସିଏ ତରଳିବ, ସେତେବେଳେ ବ୍ରହ୍ମରୂପୀ ଜଳକୁ ହିଁ ଅନୁଭବ କରିବ । ଏହି ସହଜ ସତ୍ୟ ସ୍ୱରୂପ ପ୍ରତି ଅନଭିଜ୍ଞ ଥିବାରୁ ଏତେଗୁଡିଏ ଶାସ୍ତ୍ରର ରଚନା କରାଯାଇଛି, ଅସଂଖ୍ୟ ମାର୍ଗର ରଚନା କରାଯାଇଛି ଯଥା – କର୍ମ, ଭକ୍ତି, ଯୋଗ, ସନ୍ୟାସ ଇତ୍ୟାଦି । ସବୁର ଉଦ୍ଦେଶ୍ୟ ହେଉଛି କେବଳ ଏକ ଆତ୍ମାକୁ ଜାଣିବା । ସେହି ଆତ୍ମା ସାଧନ ବିନା ବି ତୁମକୁ ମୁଁ ରୂପରେ ପ୍ରାପ୍ତ ହୋଇଛି ।

ସୁଷୁପ୍ତିରୁ ଉଠିବା ଠାରୁ ଆରମ୍ଭ କରି ସ୍ୱପ୍ନ ଶେଷ ହେଲାଯାଏ ବାରମ୍ବାର ବଦଳୁଥିବା ଯେଉଁ ମୁଁ' ଅଛି ତାହା ନକଲି ଏବଂ ସୁଷୁପ୍ତି ଅବସ୍ଥାରେ ଯେଉଁ ମୁଁ ଅଛି, ସେ ହିଁ ଅସଲି ନିରୁପାଧିକ ମୁଁ । ତାହା ହିଁ ତୁମେ ।

ଲୋକମାନଙ୍କର ରୁଚି ସହଜ ନିତ୍ୟପ୍ରାପ୍ତ ବସ୍ତୁ ପ୍ରତି ନାହିଁ ବରଂ ବିସ୍ତାରିତ, ଆକର୍ଷକ ତଥା ଜଟିଳ ପ୍ରକ୍ରିୟାଗୁଡ଼ିକ ମାଧ୍ୟମରେ ପ୍ରାପ୍ତ କରିବା ପ୍ରତି ରହିଛି । ସେଥିପାଇଁ ଏତେ ଗୁଡ଼ିଏ ଧର୍ମର ସୃଷ୍ଟି ହୋଇଗଲା, ଯାହା ପ୍ରତ୍ୟେକ ପ୍ରତ୍ୟେକ ଠାରୁ ଅଧିକ ଜଟିଳ ତଥା ପ୍ରତ୍ୟେକ ଧର୍ମର ପ୍ରତ୍ୟେକ ଗ୍ରନ୍ଥ, ସିଦ୍ଧାନ୍ତ, ମତଗୁଡ଼ିକର ନିଜ-ନିଜ ଅନୁଗାମୀ ତଥା ବିରୋଧୀ ବି ରହିଛନ୍ତି ।

ଜଣେ ଅଶିକ୍ଷିତ ବ୍ୟକ୍ତି ଜପ ତଥା ଆରାଧନାରେ ସନ୍ତୁଷ୍ଟ ରହୁଥିଲା ବେଳେ ଜ୍ଞାନୀ ସଦାବେଳେ ସନ୍ତୁଷ୍ଟ ରହିଥାନ୍ତି । ସମସ୍ତ କଠିନତା ଆସେ ଯେଉଁମାନେ ପୁସ୍ତକ କୀଟ ହୋଇଯାଇଛନ୍ତି, ସେହି ପଣ୍ଡିତମାନଙ୍କ ପାଇଁ, ଯେଉଁମାନେ ଶବ୍ଦ ଜାଲ ରୂପକ ଅରଣ୍ୟରେ ବାଟ ଭୁଲି କଷ୍ଟ ପାଉଛନ୍ତି ।

**ପ୍ରଶ୍ନ ୪୨ – ଏତେ ଗୁଡିଏ ଶାସ୍ତ୍ରର ପ୍ରୟୋଜନ କ'ଣ ?**

ଉତ୍ତର – ସମସ୍ତ ଶାସ୍ତ୍ର ଗୁଡ଼ିକର ପ୍ରୟୋଜନ କେବଳ ଏତିକି ଯେ, ମନୁଷ୍ୟ ନିଜର ମୂଳ ସ୍ରୋତ ଆଡ଼କୁ ଫେରିଆସୁ । ମନୁଷ୍ୟର ଶାସ୍ତ୍ର ଅଭ୍ୟାସ ଦ୍ୱାରା କୌଣସି ନୂଆ ବସ୍ତୁକୁ ପ୍ରାପ୍ତ କରିବାର ନାହିଁ । ଯେମିତି ନକ୍ସା ଦେଖି କୌଣସି ନଗରୀକୁ ଯାତ୍ରା କରିବା ପାଇଁ ଯାତ୍ରୀ ବାହାରିପଡେ ଏବଂ ସମୟକ୍ରମେ ସେଇଠି ପହଞ୍ଚିଯାଏ, ସେହିପରି ମୋକ୍ଷାର୍ଥୀକୁ ଗ୍ରନ୍ଥ ପଢି ଆବୃତ୍ତି କରି ଆତ୍ମା ପର୍ଯ୍ୟନ୍ତ ପହଞ୍ଚିବାକୁ ପଡେନାହିଁ । ଆତ୍ମା ଦୂରରେ ନାହିଁ, ସେ ଭିନ୍ନ ନୁହେଁ, ଆତ୍ମା ଏବେ ଏବଂ ଏହିଠାରେ ଅଛି । କେବଳ ଭ୍ରାନ୍ତିଗୁଡ଼ିକରୁ, ଭୁଲ ଧାରଣାଗୁଡିକରୁ ମୁକ୍ତି ପାଇବା ପାଇଁ ଶାସ୍ତ୍ର ଅଭ୍ୟାସ କରିବାକୁ ପଡିଥାଏ । ଏହା ପରିବର୍ତ୍ତେ ମନୁଷ୍ୟ କିଛି ବିଚିତ୍ର ତଥା ରହସ୍ୟମୟ ବସ୍ତୁଗୁଡ଼ିକୁ ପାଇବା, ସିଦ୍ଧି ପାଇବା ପାଇଁ ପ୍ରୟାସ କରିଥାଏ । କାରଣ ସେହିଭଳି ଅଜ୍ଞାନୀ ମନରେ ଏହି ଭ୍ରାନ୍ତ ଧାରଣା ରଖିଥାଏ ଯେ, ସୁଖ ଆଉ କେଉଁଠି ରହିଛି ।

ଶାସ୍ତ୍ର, ଜ୍ଞାନୀମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । କାରଣ ସେମାନଙ୍କର ଆତ୍ମା ସହିତ ସାକ୍ଷାତ୍‌କାର ସବୁ ସମୟରେ ହେଉଛି । ସେମାନଙ୍କର କିଛି ପାଇବା ବର୍ତ୍ତମାନ ଆଉ କର୍ତ୍ତବ୍ୟ ହୋଇ ରହିନାହିଁ । ଯାହା କିଛି ପାଇବାର, ଜାଣିବାର ବାକୀ ଥିଲା ସେହି ଆତ୍ମା ତ ହେଉଛି ସେ' ନିଜେ । ଶାସ୍ତ୍ର ଅଜ୍ଞାନମାନଙ୍କ ପାଇଁ ହୋଇଥାଏ । ଔଷଧ ରୋଗୀ ପାଇଁ ଅନିବାର୍ଯ୍ୟ ହୋଇଥାଏ, ସୁସ୍ଥ ଲୋକ ପାଇଁ ନୁହେଁ । ଶାସ୍ତ୍ର ମୁମୁକ୍ଷୁମାନଙ୍କ ପାଇଁ ବିଧି ନିଷେଧାତ୍ମକ ଉପଦେଶ ଦେଇଥାଏ, ଜ୍ଞାନୀମାନଙ୍କୁ ନୁହେଁ ।

କୁହାଯାଏ ଯେ ବୃତ୍ତି ପ୍ରଭାକର ଗ୍ରନ୍ଥର ରଚୟିତା ପ୍ରଥମେ ୩,୫୦,୦୦୦ ପୁସ୍ତକ ଅଧ୍ୟୟନ କରିଥିଲେ । ଏହାର କ'ଣ ଆବଶ୍ୟକତା ଅଛି ? 'ବିଚାର ସାଗର' ହେଉଛି ତର୍କ ତଥା ଟେକ୍‌ନିକ୍‌ର ଶବ୍ଦ ଭଣ୍ଡାର ? କେବଳ ସେଗୁଡ଼ିକୁ ମୁଖସ୍ଥ କରି, ପଢି, ଜ୍ଞାନୀ, ସନ୍ଥମାନଙ୍କୁ ପ୍ରଶ୍ନ ପଚାରି ନିଜର ବିଦ୍‌ବତ୍ତା ପ୍ରଦର୍ଶନ କରିବା ପାଇଁ ତାହା ଉପଯୋଗୀ ହୋଇଥାଏ । ଯେଉଁମାନେ ଶାସ୍ତ୍ର ଜାଲରେ ପଡ଼ିସାରିଛନ୍ତି, ସେମାନଙ୍କୁ ନାନକ, କବୀର ଇତ୍ୟାଦି ସନ୍ଥମାନଙ୍କର ସତ୍ୟ, ସରଳ କଥା ସବୁ ମିଠା ଲାଗେ ନାହିଁ ।

ସେ' ହିଁ ନିଶ୍ଚିତ ଭାବରେ ଭାଗ୍ୟବାନ, ଯାହାଙ୍କୁ ଆତ୍ମତତ୍ତ୍ୱ ସିଧାସଳଖ ବୁଝା ପଡ଼ିଗଲା ଏବଂ ସେ ତର୍କ, ଖଣ୍ଡନ-ମଣ୍ଡନର କୂପ ଭିତରେ ପଡିଲେ ନାହିଁ । 'ମୁଁ କିଏ'ର ଅନ୍ୱେଷଣ କରିବା ଜୀବର ଚରମ ଲକ୍ଷ୍ୟ ହେବା ଉଚିତ୍ ।

ପରମାତ୍ମା ତ ମନ, ବାଣୀର ଉପରେ । ତେବେ କାହିଁକି ଶ୍ଳୋକ, ମନ୍ତ୍ରଗୁଡ଼ିକୁ ଘୋଷି ଚାଲିବ ? ଅଯଥାରେ ଶାସ୍ତ୍ରଗୁଡ଼ିକୁ ପଢିବା ପାଇଁ କାହିଁକି ସମୟ ନଷ୍ଟ କରିବ ?

**ପ୍ରଶ୍ନ ୪୩– ଚନ୍ଦ୍ରମାର୍ଗ ଏବଂ ସୂର୍ଯ୍ୟମାର୍ଗ କ'ଣ ? ତଥା ସେମାନଙ୍କ ଭିତରେ ସରଳ କିଏ ?**

**ଉତ୍ତର** – ରବିମାର୍ଗ ହେଉଛି ଜ୍ଞାନମାର୍ଗ ଏବଂ ଚନ୍ଦ୍ରମାର୍ଗ ଯୋଗମାର୍ଗ । କୁହାଯାଇଥାଏ ଯେ, ୭୨୦୦୦ ନାଡ଼ିକୁ ଶୁଦ୍ଧ କଲାପରେ ସୁଷୁମ୍ନାରେ ପହଞ୍ଚି ମନ ସହସ୍ରାର ପର୍ଯ୍ୟନ୍ତ ଯାଏ, ଯେଉଁଠି ଅମୃତର ଝରଣା ଅଛି ।

ଏସବୁ ମାନସିକ କଳ୍ପନା । ମନୁଷ୍ୟ ପ୍ରଥମରୁ ତ କଳ୍ପନାଗୁଡ଼ିକ ଭିତରେ ଘେରି ହୋଇ ରହିଛି । ବର୍ତ୍ତମାନ ଯୋଗ ରୂପରେ ଅନ୍ୟ କଳ୍ପନାଗୁଡିକ ଆହୁରି ଯୋଡି ହୋଇଯାଏ । ନିଜର କଲ୍ୟାଣ ପାଇଁ, ସମସ୍ତ କଳ୍ପନାର ଜାଲରୁ ମୁକ୍ତି ଦେଇ ତାକୁ ସଂକଳ୍ପ ଶୂନ୍ୟ ଆତ୍ମ ଚୈତନ୍ୟରେ ସ୍ଥିର କରାଇବାକୁ ହେବ । ସେପର୍ଯ୍ୟନ୍ତ ଆମେ ସିଧାସଳଖ ଜ୍ଞାନମାର୍ଗରେ କାହିଁକି ନ ଚାଲିବା । ପ୍ରଥମରୁ ରହି ଆସିଥିବା ବୋଝ ଉପରେ ଆଉ ନୂଆ ବୋଝ କାହିଁକି ବଢ଼ାଇବା ?

ଯେମିତିକି ଗୋଟିଏ ହେଉଛି ପ୍ରାଣବାୟୁ, ଯଦ୍ୱାରା ସବୁକାର୍ଯ୍ୟ ସମ୍ପାଦିତ ହୁଏ । କିଛି ଦର୍ଶନଶାସ୍ତ୍ରୀ ବିଦ୍ୟାର୍ଥୀକୁ ପନ୍ଦରଟି ପ୍ରାଣ କଥା କହିବେ ପୁଣି ସେମାନଙ୍କର ନାମ ମୁଖସ୍ଥ କରାଇବେ, ସେମାନଙ୍କ କାର୍ଯ୍ୟକୁ ଅଲଗା ଅଲଗା ଭାବରେ କହିବେ– ଏସବୁ କାହିଁକି ? କେବଳ ଜଟିଳତା, କଠିନତା ଦେଖାଇ ବୋଝ ବଢ଼ାଇବା ହିଁ ସାର ।

ବରଫକୁ ନଷ୍ଟ କରିବାର କୌଣସି ଆବଶ୍ୟକତା ନାହିଁ କେବଳ ନିଜକୁ ଜଳ ଠାରୁ ଅଲଗା ମୁଁ ବରଫ ଏହି ବ୍ୟଷ୍ଟି ଅହଂକାରକୁ ଛାଡିଦେବା ଆବଶ୍ୟକ । ବରଫ ଦୃଷ୍ଟି ଛାଡି ନିଜର ବାସ୍ତବ ଜଳ ସ୍ୱରୂପଉପରେରେ ନିଷ୍ଠା ରଖିବା ଆବଶ୍ୟକ । ସେହିପରି ଆମକୁ ନିଜର କଲ୍ୟାଣ ପାଇଁ କୌଣସି କଠିନ ତପସ୍ୟା ବା କଷ୍ଟପ୍ରଦ ସାଧନା କରିବାର ଆବଶ୍ୟକତା ନାହିଁ, କେବଳ ନିଜର ମିଥ୍ୟା ଦେହାଭିମାନ ଭଳି ମିଥ୍ୟା ମୁଁ ବୋଧକୁ ଛାଡ଼ି, ପ୍ରକୃତ ସାକ୍ଷୀ ମୁଁ ଭାବ ରୂପକ ଆତ୍ମଭାବକୁ ଧାରଣ କରିବା ଉଚିତ ।

ଚିମୁଟା ସବୁ ପଦାର୍ଥକୁ ଧରେ କିନ୍ତୁ ଯେଉଁ ହାତରେ ଚିମୁଟା ଧରାଯାଏ ସେହି ହାତକୁ ଚିମୁଟା ଧରିପାରେ ନାହିଁ, ସେହିପରି ବୁଦ୍ଧି ସବୁ ବିଷୟରେ ଜ୍ଞାନ ରଖିଥାଏ କିନ୍ତୁ ଯେଉଁ ଆତ୍ମା ଦ୍ୱାରା ବୁଦ୍ଧି ପ୍ରକାଶିତ ହୋଇଥାଏ, ସେହି ଆତ୍ମାକୁ ବୁଦ୍ଧି ଜାଣିପାରେ ନାହିଁ ।

"ବିଜ୍ଞାତାରଂ ରେ କେନଂ ବିଜାନିୟାତ"
ୟେନ ଇଦଂ ସର୍ବ ବିଜାନିୟାତ ତମ୍ କେନ ବିଜାନିୟାଦ୍ ।।

ସେ' ହିଁ ଧୀର ପୁରୁଷ, ଯେ ଚିନ୍ତା, ଦୁଃଖ, ରୋଗ, ଗରୀବାବସ୍ଥା, ଅପମାନ, ମୃତ୍ୟୁ, ନିନ୍ଦା, ଦୁର୍ବଚନଗୁଡ଼ିକୁ ସହ୍ୟ କରିବାର କ୍ଷମତା ରଖିଥାନ୍ତି, ସେ' ହିଁ ଶକ୍ତିବାନ ।

**ପ୍ରଶ୍ନ ୪୪ – ଶରୀର ମଲାପରେ ଚେତନ ରହେ ନା ଚାଲିଯାଏ ?**

**ଉତ୍ତର** – ଶରୀର ମଲାପରେ ଚେତନ ତ ବିଦ୍ୟମାନ ରହେ ମାତ୍ର ମୃତ ଶରୀର ଦ୍ୱାରା କ୍ରିୟା ହୁଏ ନାହିଁ । ଏହାର କାରଣ ହେଉଛି ଏୟା ଯେ, ଶରୀରରେ ସାମାନ୍ୟ ଚେତନ ଅସ୍ତି, ଭାତି, ପ୍ରିୟ ଭାବରେ ତ ବିଦ୍ୟମାନ କିନ୍ତୁ ବିଶେଷ ଚେତନ, ଯାହା ଅନ୍ତଃକରଣରେ କୂଟସ୍ଥର ଆଭାସ ପଡ଼ିଲେ, ଉତ୍ପନ୍ନ ହୋଇଥାଏ, ଯାହାକୁ ଜୀବ କୁହାଯାଏ, ଯେ ସମସ୍ତ କ୍ରିୟାର କର୍ତ୍ତା, ସେ ଦେହରେ ପ୍ରାରବ୍ଧ ଭୋଗ ଶେଷ କରି ଅନ୍ୟ ଦେହରେ ପ୍ରବେଶ କରିବା ପାଇଁ ବାହାରିଯାଏ । ଯେମିତି ବାସନରେ ପାଣି ଥିଲେ ପ୍ରତିବିମ୍ବ ପଡେ, ଜଳ ନଷ୍ଟ ହୋଇଗଲେ ପ୍ରତିବିମ୍ବ ପଡେ ନାହିଁ, ସେହିପରି ଯେପର୍ଯ୍ୟନ୍ତ ଶରୀର ରୂପକ ଘଟରେ ବୁଦ୍ଧି ରୂପକ ଜଳ ପୂର୍ଣ୍ଣ ହୋଇଥାଏ ସେପର୍ଯ୍ୟନ୍ତ କୂଟସ୍ଥ ଆତ୍ମାର ପ୍ରତିବିମ୍ବ ଜୀବ ଉପରେ ପଡି କ୍ରିୟା କରି ଚାଲିଥାଏ । ଯେଉଁ ସମୟରେ ଅନ୍ତଃକରଣ ଏବଂ ଇନ୍ଦ୍ରିୟ ସେହି ଶରୀରକୁ ଛାଡ଼ିଦିଅନ୍ତି ସେହି ସମୟରେ ବିଶେଷ ଚେତନ ବି ଲୀନ ହୋଇଯାଏ । ସେଥିପାଇଁ ଶରୀର କ୍ରିୟା କରିପାରେ ନାହିଁ । ଆତ୍ମା ଅଖଣ୍ଡ ସର୍ବବ୍ୟାପକ ଭଳି ବିଦ୍ୟମାନ ରହିଥାଏ ।

**ପ୍ରଶ୍ନ ୪୫– ଅହଂକାରର ଦୁଇଟି ଭେଦ କଣ କଣ ?**

ଉତ୍ତର – ଗୋଟିଏ ହେଉଛି ମିଥ୍ୟା ଅହଂକାର, ଅନ୍ୟଟି ବାସ୍ତବ ଅହଂକାର । ଯେମିତି ସିନେମାରେ ଅଭିନୟ କରୁଥିବା ଜଣେ ସାଧାରଣ ଲୋକ ରାଜା ହେବାର ଅଭିନୟ କରେ କିନ୍ତୁ ସେ ଜାଣିଥାଏ ଯେ ମୁଁ ସେହି ରାଜାର ଅଭିନୟ କରୁଛି । ବାସ୍ତବରେ ମୁଁ ତ ଜଣେ ସାଧାରଣ ଲୋକ । ସେହିପରି ଜୀବ ନିଜକୁ ସ୍ତ୍ରୀ, ପୁରୁଷ, ହିନ୍ଦୁ, ବ୍ରାହ୍ମଣ, କ୍ଷତ୍ରିୟ, ରୋଗୀ–ନିରୋଗ, ବାଳକ, ଯୁବକ, ବୃଦ୍ଧ, ଜନ୍ମନେଲା ବାଲା, ମରିବା ବାଲା ବୋଲି ମାନି ନେଇଥାଏ । ଏହା ତାହାର ମଳିନ ଅହଂକାର ଏବଂ ନିଜେ ନିଜକୁ ଦେହ ଠାରୁ ଭିନ୍ନ ଆତ୍ମା ବୋଲି ଜାଣିବା ଏହା ହେଉଛି ଜୀବର ଶୁଦ୍ଧ ଅହଂକାର ।

ଜ୍ଞାନୀର ମୁଁ ଭାବ ବାସ୍ତବରେ ତାଙ୍କ ଭିତରେ ଏହିଭଳି ପ୍ରତିଷ୍ଠିତ ହୋଇଥାଏ ଯେ – 'ମୁଁ ହିଁ ସଚ୍ଚିଦାନନ୍ଦ ବ୍ରହ୍ମ', କେବଳ ବ୍ୟବହାର ପାଇଁ ହିଁ ମୁଁ'ର ସମ୍ବନ୍ଧକୁ ଦେହ, ଇନ୍ଦ୍ରିୟ, ପ୍ରାଣ, ମନ, ବୁଦ୍ଧି ଇତ୍ୟାଦିରେ ଆରୋପିତ କରି କହୁଛି ଯେ – "ମୁଁ ରୋଗୀ, ମୁଁ ଭୋକିଲା, ମୁଁ ଯୁବକ, ମୁଁ ଯାଉଛି, ମୁଁ ଖାଉଛି, ମୁଁ ଦେଖୁଛି, ମୁଁ ଶୁଣୁଛି ଇତ୍ୟାଦି ।" ଯେତେବେଳେ ମଳିନ ଦେହାଭିମାନ, କର୍ତ୍ତୃତ୍ୱାଭିମାନ ନ ରହେ, ସେତେବେଳେ ଶୁଦ୍ଧ ଅହଂକାରର ବି ଆବଶ୍ୟକତା ରହେ ନାହିଁ । ଯେତେବେଳେ ରୋଗ ନାହିଁ ସେତେବେଳେ ଔଷଧର ଆବଶ୍ୟକତା ରହେନାହିଁ । ସେହିପରି ଯେପର୍ଯ୍ୟନ୍ତ ଅଜ୍ଞାନ ରହିଛି, ସେ ପର୍ଯ୍ୟନ୍ତ ଜ୍ଞାନର ଆବଶ୍ୟକତା ରହିଛି । ଯେତେବେଳେ ଅଜ୍ଞାନ ନାହିଁ, ସେତେବେଳେ ଜ୍ଞାନର ବି ଆବଶ୍ୟକତା ରହେନାହିଁ । ଅନ୍ତଃକରଣରେ ଉତ୍ପନ୍ନ ହେଉଥିବା ବିଚାରାଗ୍ନି ଅବିଦ୍ୟାକୁ ଜଳାଇଦେଇ ନିଜେ ବି ଶାନ୍ତ ହୋଇଯାଏ, ପୁନଶ୍ଚ ଅସ୍ତି, ଭାତି, ପ୍ରିୟ ସାମାନ୍ୟ ଚେତନ ଆତ୍ମା ହିଁ ରହିଯାଏ । ବିଶେଷ ଉପାଧି ନଷ୍ଟ ହୋଇଯାଏ । ପତି ଥିବା ଯାଏ ପତ୍ନୀ ଅଛି, ପତି ନଥିଲେ ପତ୍ନୀ ଉପାଧି ବି ସମାନ ହୋଇଯାଏ, କେବଳ ସ୍ତ୍ରୀ ସଂଜ୍ଞା ଅବଶେଷରେ ରହିଯାଏ ।

ଜ୍ଞାନୀର ବାସ୍ତବ ଦୃଷ୍ଟି ତ ଶୁଦ୍ଧ ସଚ୍ଚିଦାନନ୍ଦ, ନିର୍ବିକାର ବ୍ରହ୍ମଙ୍କ ଠାରେ ଥାଏ, ମାତ୍ର ଜିଜ୍ଞାସୁ ଏବଂ ସାଂସାରିକମାନଙ୍କ ଗହଣରେ ସେମାନଙ୍କ ଅନୁସାରେ ଦେହଭାବ ରଖି ସେ ବାର୍ତ୍ତାଳାପ କରିଥାଏ ।

ଆତ୍ମଜ୍ଞାନ ହିଁ ପ୍ରକୃତ ଜୀବନ, କାରଣ ବ୍ରହ୍ମଭାବରେ ଜୀବଭାବ ଲୀନ ହୋଇଗଲେ ସେ ଅମର ଭାବକୁ ପ୍ରାପ୍ତ ହୋଇଯାଏ । ପୁନଶ୍ଚ ଜନ୍ମ–ମରଣର ସମାପ୍ତି ହୋଇଯାଏ ।

**ପ୍ରଶ୍ନ ୪୬– ଜ୍ଞାନ କ'ଣ ?**

**ଉତ୍ତର** – ଏହା ସେହି ଅଗ୍ନି, ଯିଏ ଅଗ୍ନି ଏବଂ ଜଳ ଉଭୟକୁ ଜଳାଇ ଦିଏ, ଏହା ସେହି ପ୍ରକାଶମାନ ଦିବସ, ଯେଉଁଠି ଦିନ ଏବଂ ରାତି ରହେ ନାହିଁ, ଏହା ସେହି ଆନନ୍ଦ, ଯେଉଁଠି ହର୍ଷ ଏବଂ ଶୋକ ଉଭୟ ରହିପାରନ୍ତି ନାହିଁ, ଏହା ସେହି ଧନ, ଯେଉଁଠି ଧନୀକତା ଏବଂ ଦାରିଦ୍ର୍ୟ ଉଭୟ ତୁଚ୍ଛ, ଏହା ସେହି ଜୀବନ, ଯେଉଁଥିରେ ଜୀବନ ଏବଂ ମୃତ୍ୟୁ ଉଭୟର ଅନ୍ତଃ ହୋଇଯାଏ – ତାହା ହେଉଛି ଜ୍ଞାନ ।

ଜ୍ଞାନାଗ୍ନିରେ ସମସ୍ତ ସାଂସାରିକ ପଦାର୍ଥଗୁଡ଼ିକର ନାମ ରୂପ ହଜିଯାଏ, ଲୋକ–ପରଲୋକ ମିଥ୍ୟା ହୋଇଯାଏ, ଅଗ୍ନି ଏବଂ ଜଳ ଉଭୟ ଜଳିଯାନ୍ତି ଅର୍ଥାତ୍ ଏକ ବ୍ରହ୍ମରୂପ ଛଡା ସବୁ ଦୃଶ୍ୟ ହୋଇ ରହିଯାଏ ।

ଜ୍ଞାନାଲୋକ ସେମିତି ଆଲୋକ ନୁହେଁ ଯାହା ଦିନର ଆଲୋକ ଭଳି ଚମକି ଉଠେ ଏବଂ ଆଖିରେ ଦେଖାଯାଏ । ନା ସେ ରାତିର ଅନ୍ଧାର ଭଳି ଅନ୍ଧାର, ଯେଉଁଠି କିଛି ଭାସମାନ ହୁଏ ନାହିଁ, କିନ୍ତୁ ଏହା ଏପରି ଏକ ତେଜ, ଯେଉଁଥିରେ ଦିନ–ରାତି, ଆଲୋକ–ଅନ୍ଧାର ଉଭୟ ଭାସିଉଠନ୍ତି ଏବଂ ଲୀନ ହୋଇଯାନ୍ତି । ହର୍ଷ–ଶୋକ ଅନ୍ତଃକରଣର ଧର୍ମ ନିଶ୍ଚିତ ହୋଇଗଲା ପରେ ଅନ୍ତଃକରଣ ସମତା ଭାବକୁ ଧାରଣ କରିନିଏ, ନା ହର୍ଷ ହୁଏ ନା ଶୋକ । ଆତ୍ମଜ୍ଞାନ ହିଁ ଏମିତି ଏକ ଧନ ଯାହାକୁ ପାଇଲେ ନା ସାଂସାରିକ ଧନର ଇଚ୍ଛା ରହେ ନା ଦାରିଦ୍ର୍ୟ ରହିପାରେ । ଯେତେବେଳେ ଆନନ୍ଦ ସାଗରର ଜ୍ଞାନ ହୋଇଗଲା ସେତେବେଳେ ଆନନ୍ଦର ଛାୟା (ସୁଖ) ପଛରେ କିଏ ଦୌଡ଼ିବ ?

ସ୍ୱପ୍ନରେ ତୁମେ ଦେଖୁଛ 'ନିଜକୁ ନିଜେ' କିନ୍ତୁ କହୁଛ ମୁଁ ନଗର, ପାହାଡ଼ , ନଦୀ, ସର୍ପ, ହାତୀ, ଭୂତ ଦେଖିଲି । ଦେଖୁଛ ତ ସ୍ୱର୍ଣ୍ଣ କିନ୍ତୁ ଅଳଂକାରର ନାମ ବତାଉଛ । ଦେଖୁଛ ମାଟି କିନ୍ତୁ ଆକାରଗୁଡ଼ିକର ନାମ ବତାଉଛ । ସେହିପରି ତୁମେ ଦେଖୁଛ ତ ଜଗତ ଉପାଦାନ ସ୍ୱରୂପ ବ୍ରହ୍ମକୁ କିନ୍ତୁ ଜଗତର ନାମ ବତାଉଛ । ଅଜ୍ଞାନକୁ ଯାହା ଜଗତ, ଜ୍ଞାନୀକୁ ତାହା ବ୍ରହ୍ମରୂପ ପ୍ରତୀତ ହୋଇଥାଏ । ଯେମିତି ଅଜ୍ଞାନକୁ ଯାହା ସିନେମା ଭଳି ଦେଖାଯାଏ, ଜ୍ଞାନୀ ତାକୁ ଆଲୋକ ଭାବରେ ଜାଣିଥାଏ ।

**ଯଦ୍ୟଦ୍‌ପଶ୍ୟତି ଚକ୍ଷୁର୍ଭ୍ୟାମ୍ ତତ୍ତଦାତ୍ମେତି ଭାବୟେତ ।**
**ଯଦ୍ୟଚ୍ଛ୍ରଣୋତି କର୍ଣ୍ଣାଭ୍ୟାମ୍ ତତ୍ତଦାତ୍ମେତି ଭାବୟେତ୍ ।।**

**ଲଭ୍ୟତେ ନାସିକା ଯଦ୍ୟଦ୍ ତତ୍ତଦାତ୍ମେତି ଭାବୟେତ୍ ।**
**ଜିହ୍ୱଭ୍ୟାହି ଯଦ୍ ରସନମ୍ହିୟତେ ତତ୍ତଦାତ୍ମେତିଭାବୟତ ।।**

– ଶ୍ରୁତି

'ଯାହା କିଛି ନେତ୍ର, କର୍ଣ୍ଣ, ନାସିକା, ଚର୍ମ ଏବଂ ଜିହ୍ୱା ଦ୍ୱାରା ବିଷୟ ଗ୍ରହଣ ହୋଇଥାଏ, ତାହାକୁ ସର୍ବ ଖଲ୍ୱିଦଂ ବ୍ରହ୍ମ ବୋଲି ଜାଣ ।

ନାହଂ ଜାତୋ ଜନ୍ମ ମୃତ୍ୟୁ କୁତୋ ମେ,
ନାହଂ ପ୍ରାଣଃ କ୍ଷୁତ୍ପିପାସେ କୁତୋ ମେ ।
ନାହଂ ଚିତ୍ତଂ ଶୋକ ମୋହୌ କୁତୋ ମେ,
ନାହଂ କର୍ତ୍ତା ବନ୍ଧ ମୋକ୍ଷୌ କୁତୋ ମେ ।।

ନ କର୍ମାଦିନା ଅବିଦ୍ୟା ନିବୃତିଃ
କର୍ମ ଅଜ୍ଞାନ ନୟୋ ବିରୋଧ ନ ଭବେତ
ଜ୍ଞାନ ଅଜ୍ଞାନ ବିରୋଧଂ ଭବେତି
ଅତ୍ଵଜ୍ଞାନେ ନୈବା ଜ୍ଞାନ ନିବୃତିଃ
ନଜଜ୍ଞାନଃ ବିଚାରାଦେବ ଭବତି ।

କର୍ମ ଦ୍ୱାରା ଅଜ୍ଞାନର ନାଶ ହୋଇପାରେ ନାହିଁ କାରଣ କର୍ମ ଏବଂ ଅଜ୍ଞାନ ଉଭୟ ସମାନ ହୋଇଥିବାରୁ ବିରୋଧୀ ନୁହନ୍ତି । କର୍ମ ଏବଂ ଅଜ୍ଞାନ ଏକା ସାଙ୍ଗରେ ରହିପାରନ୍ତି, ସେଥିପାଇଁ କର୍ମ ଦ୍ୱାରା ଅଜ୍ଞାନର ନାଶ ହେବା ସମ୍ଭବ ନୁହେଁ । ଜ୍ଞାନ, ଅଜ୍ଞାନର ବିରୋଧୀ ହୋଇଥିବାରୁ ସାଥୀ ହୋଇ ରହିପାରନ୍ତି ନାହିଁ, ଯେମିତି ଅନ୍ଧାର ଏବଂ ଆଲୋକ ଏକା ସାଙ୍ଗରେ ରହିପାରନ୍ତି ନାହିଁ । ଅତଏବ ଜ୍ଞାନ ଦ୍ୱାରା ଅଜ୍ଞାନର ବିନାଶ ହୋଇଥାଏ । ଏହା ହିଁ ନିଶ୍ଚିତ ସିଦ୍ଧାନ୍ତ । ଏହି ଜ୍ଞାନ ସଦ୍‌ଗୁରୁଙ୍କ ଠାରୁ ବିଚାର ଦ୍ୱାରା ଉଦୟ ହୋଇଥାଏ ।

ଆଚାର୍ଯ୍ୟ ଶଙ୍କର ବ୍ରାହ୍ମଣ ପ୍ରଭାକରଙ୍କ ପୁତ୍ରକୁ ପଚାରୁଛନ୍ତି – "ହେ ଶିଶୁ ! ତୁମେ କିଏ ? କାହାର ପୁତ୍ର ? କୁଆଡେ ଯାଉଛ ? ତୁମର ନାମ କ'ଣ ? କେଉଁଠୁ ଆସିଛ ? ଏହି ସବୁ ପ୍ରଶ୍ନର ସୁସ୍ପଷ୍ଟ ଉତ୍ତର ଦେଇ ମୋତେ ଖୁସି କରାଅ । ତୁମକୁ ଦେଖି ମୋତେ ଭାରି ଆନନ୍ଦ ଲାଗୁଛି ।"

କସ୍ତ୍ୱଂ ଶିଶୋ କସ୍ୟ କୁତୋଽସ୍ତି ଗନ୍ତା
କିଂ ନାମ ତେ ତ୍ୱଂ କୁତ ଆଗତୋଽସି ?
ଏତଦ୍ ବଦ ତ୍ୱଂ ମମ ସୁପ୍ରସିଦ୍ଧଂ
ମତ୍‌ପ୍ରିତୟେ ପ୍ରୀତି ବିବର୍ଦ୍ଧନୋଽସି ।

ବ୍ରାହ୍ମଣ ବାଳକ ଉତ୍ତର ଦେଉଛି –

ନାହଂ ମନୁଷ୍ୟୋ ନ ଚ ଦେବଯକ୍ଷୌ
ନ ବ୍ରାହ୍ମଣ୍ୟ–କ୍ଷତ୍ରିୟ–ବୈଶ୍ୟ–ଶୁଦ୍ରଃ ।

ନ ବ୍ରହ୍ମଚାରୀ ନ ଗୃହୀ ବନସ୍ଥୋ
ଭିକ୍ଷୁର୍ନ ଚାହଂ ନିଜବୋଧରୂପଃ ।୧।

ମୁଁ ହେଉଛି କେବଳ ନିଜ ବୋଧ ସ୍ୱରୂପ ଆତ୍ମା ।୧।

ସୂର୍ଯ୍ୟ ଯେମିତି ଲୋକମାନଙ୍କ ଉଦ୍ୟମର କାରଣ, ସେହିପରି ମନ ଚକ୍ଷୁ ଆଦି ଇନ୍ଦ୍ରିୟଗୁଡ଼ିକ ପ୍ରବୃତ୍ତିର କାରଣ ତଥା ସବୁ ପ୍ରକାରର ଉପାଧି ରହିତ ଆକାଶ ପରି, ମୁଁ ହିଁ ସେହି ନିତ୍ୟ-ଜ୍ଞାନ-ସ୍ୱରୂପ ଆତ୍ମା ।୨।

ଅଗ୍ନିର ଉଷ୍ଣତା ପରି ନିତ୍ୟ ଚୈତନ୍ୟ ହିଁ ଯାହାର ସ୍ୱରୂପ, ଯେ ନିଶ୍ଚଳ ଏବଂ ଅଦ୍ୱିତୀୟ, ଯାହାକୁ ନଷ୍ଟ ନ କରି ଜଡ଼ ପ୍ରକୃତି ତଥା ମନ, ଚକ୍ଷୁ ଆଦି ଇନ୍ଦ୍ରିୟଗୁଡ଼ିକ ନିଜ ନିଜର କାର୍ଯ୍ୟରେ ପ୍ରବୃତ୍ତ ହୋଇଥାନ୍ତି, ମୁଁ ସେହି ନିତ୍ୟ-ଜ୍ଞାନ-ସ୍ୱରୂପ ଆତ୍ମା ।୩।

ଦର୍ପଣରେ ଦୃଶ୍ୟମାନ ମୁଖର ପ୍ରତିବିମ୍ବ ଯେମିତି ଯଥାର୍ଥ ବସ୍ତୁ ଠାରୁ ଅଲଗା ନୁହେଁ ସେହିପରି ବୁଦ୍ଧିର ଦର୍ପଣରେ ଯେଉଁ ଆତ୍ମା-ପ୍ରତିବିମ୍ବ ରୂପରେ, ଆଭାସ ଚୈତନ୍ୟ ଜୀବ ନାମରେ କଥିତ, ସେ ଯେଉଁ ବ୍ରହ୍ମ ଠାରୁ ଅଭିନ୍ନ, ମୁଁ ସେହି ନିତ୍ୟ-ଜ୍ଞାନ-ସ୍ୱରୂପ ଆତ୍ମା ।୪।

ଦର୍ପଣ ନଥିଲେ ଯେମିତି ପ୍ରତିବିମ୍ବ ଅଦୃଶ୍ୟ ହୋଇଯାଏ, କେବଳ କଳ୍ପନା ରହିତ ଏକମାତ୍ର ସତ୍ୟ ସୁଖ ହିଁ ବିଦ୍ୟମାନ ରହେ, ସେହିପରି ବୁଦ୍ଧି-ବୃତ୍ତିର ନିରୋଧ ହେଲା ପରେ ଯାହା ବିମ୍ବ ରୂପରେ ଏକାକୀ ରହେ, ସେହି ବୋଧ ସ୍ୱରୂପ ଆତ୍ମା ହିଁ ମୁଁ ।୫।

ମନ, ଚକ୍ଷୁ ଇତ୍ୟାଦିରୁ ରହିତ ହେଲେ ବି ଯେ ମନର ମନ ଏବଂ ଚକ୍ଷୁର ଚକ୍ଷୁ ତଥାପି ଯେ ମନ ବା ଚକ୍ଷୁ ଇତ୍ୟାଦି ଇନ୍ଦ୍ରିୟଗୁଡ଼ିକର ଅଗୋଚର, ମୁଁ ହିଁ ହେଉଛି ସେହି ନିତ୍ୟ-ଜ୍ଞାନ-ସ୍ୱରୂପ ଆତ୍ମା ।୬।

"ଯେଉଁ ଅଦ୍ୱିତୀୟ ପୁରୁଷ ନିର୍ମଳ ଚିତ୍ତରେ ସ୍ୱୟଂ ପ୍ରକାଶିତ ହୋଇଥାନ୍ତି, ବିବିଧ ପାତ୍ରର ଜଳରେ ପ୍ରତିବିମ୍ବିତ ସୂର୍ଯ୍ୟ ଭଳି ଯେ ପ୍ରକାଶ-ସ୍ୱରୂପ ମୁଁ, ଅନେକ ବୁଦ୍ଧିଗୁଡ଼ିକ ଭିତରେ ବିଭିନ୍ନ ରୂପରେ ପ୍ରତୀୟମାନ ହୁଅନ୍ତି, ସେହି ନିତ୍ୟ ଜ୍ଞାନ-ସ୍ୱରୂପ ଆତ୍ମା ହେଉଛି ମୁଁ ।୭।

ଯେମିତି ସୂର୍ଯ୍ୟ ଏକା ସାଙ୍ଗରେ ଅନେକ ଚକ୍ଷୁ ଗୁଡ଼ିକରେ ଆଲୋକ ଦେଇ ଆଲୋକିତ ବସ୍ତୁଗୁଡ଼ିକୁ ଆଲୋକିତ କରି ଦେଇଥାନ୍ତି ତଥା ଯେ ସମସ୍ତ ବୁଦ୍ଧି ବୃତ୍ତି ଗୁଡିକର ଏକମାତ୍ର ପ୍ରକାଶକ, ସେହି ଜ୍ଞାନ-ସ୍ୱରୂପ ଆତ୍ମା ହିଁ ହେଉଛି ମୁଁ ।୮।

ଯେମିତି ସୂର୍ଯ୍ୟାଲୋକରେ ଆଲୋକିତ ହୋଇ ଚକ୍ଷୁ ରୂପ ଗ୍ରହଣ କରିବାରେ ସମର୍ଥ ହୋଇଥାଏ, ସେହିପରି ସୂର୍ଯ୍ୟ ଯାହାର ଜ୍ୟୋତିରେ ପ୍ରକାଶିତ ହୋଇ ଚକ୍ଷୁକୁ ଉଦ୍ଭାସିତ କରେ, ମୁଁ ହେଉଛି ସେହି ଜ୍ଞାନ-ସ୍ୱରୂପ-ନିତ୍ୟ ଆତ୍ମା ।୯।

ଗୋଟିଏ ସୂର୍ଯ୍ୟର ପ୍ରତିବିମ୍ବ ଯେମିତି ଚଞ୍ଚଳ ଏବଂ ସ୍ଥିର ଜଳରେ ବିଭିନ୍ନ ରୂପରେ ପ୍ରତୀୟମାନ ହୋଇଥାଏ, ସେହିପରି ଯେ ଏକ ହୋଇ ବି ସ୍ଥିର ଏବଂ ଚଞ୍ଚଳ ଅନେକ ପ୍ରକାରର ବୁଦ୍ଧିଗୁଡ଼ିକରେ ଅନେକ ରୂପରେ ପ୍ରତୀତ ହୁଏ, ମୁଁ ହେଉଛି ସେହି ନିତ୍ୟ-ଜ୍ଞାନ-ସ୍ୱରୂପ ଆତ୍ମା ।୧୦।

ଅତି ମୂଢ଼ ଲୋକ ମେଘରେ ଦୃଷ୍ଟି ଆଚ୍ଛନ୍ନ ହୋଇଥିବା ଯୋଗୁ ଯେମିତି ସୂର୍ଯ୍ୟକୁ ମେଘାଚ୍ଛନ୍ନ, ସେ ପ୍ରଭାହୀନ ବୋଲି ବୁଝିଥାଏ, ସେହିପରି ଯାହାକୁ ମୂଢ଼ ଲୋକ ବଦ୍ଧ ଭଳି ବୁଝନ୍ତି, ମୁଁ ହେଉଛି ସେହି ନିତ୍ୟ ଜ୍ଞାନ ସ୍ୱରୂପ ଆତ୍ମା ।୧୧।

ଯେ ସମଗ୍ର ପ୍ରାଣୀ ଏବଂ ବସ୍ତୁ ଗୁଡ଼ିକରେ ବ୍ୟାପ୍ତ ତଥାପି କୌଣସି ବସ୍ତୁ ଯାହାକୁ ସ୍ପର୍ଶ କରିପାରେ ନାହିଁ, ଯେ ଆକାଶ ପରି ସର୍ବଦା ଶୁଦ୍ଧ ଏବଂ ଅସଙ୍ଗ ସ୍ୱରୂପ, ମୁଁ ହିଁ ହେଉଛି ସେହି ଜ୍ଞାନ-ସ୍ୱରୂପ ଆତ୍ମା ।୧୨।

**ପ୍ରଶ୍ନ ୪୭– ମୋତେ ଆନନ୍ଦ ପ୍ରାପ୍ତି କିପରି ହୋଇପାରିବ ?**

**ଉତ୍ତର –** ଆନନ୍ଦ ସ୍ୱରୂପ ହୋଇ ବି ଆନନ୍ଦ ପ୍ରାପ୍ତି ପାଇଁ ଇଚ୍ଛା କରିବା ହିଁ ହେଉଛି ଅଜ୍ଞାନ ଏବଂ ଦେହତାଦାତ୍ମ୍ୟର ପ୍ରମାଣ । ସୁଷୁପ୍ତିରେ ତୁମେ ସୁଖ ରୂପ ହୋଇଥାଅ, ଏହା ତୁମର ପ୍ରତିଦିନର ଅନୁଭବ । ସେହି ସମୟରେ ତୁମେ ଯେଉଁ ଆନନ୍ଦ ସ୍ୱରୂପ ଥିଲ ସେହି ଆନନ୍ଦ ସ୍ୱରୂପ ହେଉଛ ତୁମେ । କିନ୍ତୁ ଜାଗ୍ରତ ହେଉ ହେଉ ଅହଂବୃତ୍ତି ଉଦୟ ହୋଇଯାଏ, ସେଥିପାଇଁ ଅନେକ ସଂକଳ୍ପ ଅଙ୍କୁରିତ ହୋଇଯାଏ, ଯାହା ସହଜ ଆନନ୍ଦ ସ୍ୱରୂପ ଅବସ୍ଥାକୁ ଢାଙ୍କି ପକାଏ । ଆନନ୍ଦ ହେଉଛି ତୁମର ସହଜାବସ୍ଥା । ସୁଷୁପ୍ତିରେ ନିର୍ବାଧ ଆନନ୍ଦାନୁଭୂତି ହେଉଥିଲା, କାରଣ ସେଇଠି କୌଣସି ଅହଂବୃତ୍ତି ନଥିଲା ।

ତୁମେ ହିଁ ଆନନ୍ଦ ସ୍ୱରୂପ । ତେବେ ତାହାର ଉପଭୋଗ ଏମିତି କହିବା ସତ୍ତ୍ୱେ କାହିଁକି କରୁଛ – ଆହା ! କେମିତି ବିଲକ୍ଷଣ ଆନନ୍ଦ ଆସିଲା, କେମିତି ଆନନ୍ଦଦାୟକ ସତେ !

ନିଜ ଆତ୍ମସତ୍ତାର ବିସ୍ମରଣ ନ କରିବା ହିଁ ଆନନ୍ଦର ଅନୁଭୂତି । ନିଜର ଯଥାର୍ଥ ଆନନ୍ଦ ସ୍ୱରୂପ ବ୍ୟତୀତ ତୁମେ ଅନ୍ୟ ପ୍ରକାରରେ ଦୁଃଖୀ ବି କେମିତି ହୋଇ ପାରିବ ? ତୁମର ସ୍ୱରୂପ ବି ପ୍ରେମର ଅଧିଷ୍ଠାନ । ଆନନ୍ଦ ଯୋଗୁଁ ପ୍ରେମ ଉଦୟ ହୋଇଥାଏ ।

**ପ୍ରଶ୍ନ ୪୮– ମୋକ୍ଷ କ'ଣ ? ତଥା ପାପ–ପୁଣ୍ୟ କ'ଣ ?**

**ଉତ୍ତର –** ତୁମେ ଜନ୍ମ ହୋଇନାହଁ ଏହା ଜାଣିବା ହିଁ ମୋକ୍ଷ । ଶାନ୍ତ ରହ ଏବଂ ଜାଣ ଯେ ମୁଁ ହିଁ ପରମାତ୍ମା । ଉଚିତ–ଅନୁଚିତର ଭେଦ ଦର୍ଶନ ହେଉଛି ପାପର ମୂଳ ହେତୁ । ନିଜର ପାପ ହିଁ ବାହାରେ ପ୍ରତିବିମ୍ବିତ ହୋଇଥାଏ ତଥା ନିଜ ମନର ପାପକୁ ଅନ୍ୟ ଲୋକ ଉପରେ ଆରୋପିତ କରି ଦେଇଥାଏ ।

**ପ୍ରଶ୍ନ ୪୯ – ସମାଧି ଏବଂ ସୁଷୁପ୍ତି ଭିତରେ ପ୍ରଭେଦ କ'ଣ ?**

**ଉତ୍ତର –** ଆତ୍ମ ଭାବରେ ଦେହଭାବ ଭଳି ବୁଦ୍ଧିକୁ ରଖିଦେବା ହିଁ ସମାଧି ।

ଚେଷ୍ଟା ସହିତ ସତ୍ୟ ଉପରେ ଦୃଢ଼ ରହିବା ସବିକଳ୍ପ ସମାଧି ।

ଜଗତର ବୋଧଠାରୁ ଅଲଗା ହୋଇ ସତ୍ୟରେ ବିଲୀନ ହୋଇଯିବା ହିଁ ନିର୍ବିକଳ୍ପ ସମାଧି ।

ଜଗତର ବୋଧ ଠାରୁ ଅଲଗା ହୋଇ ଅଜ୍ଞାନରେ ମନ ବୁଡ଼ିଯିବା ହିଁ ସୁଷୁପ୍ତି । ଯାହାର ପରିଚୟ, ତା'ର ମଥା ନଇଁଗଲା ପରେ ହିଁ ହୋଇଥାଏ । ସମାଧିରେ ବସି ବ୍ୟକ୍ତିର ମୁଣ୍ଡ ନଇଁଯାଏ ନାହିଁ ।

ସମାଧିର ତାତ୍ପର୍ଯ୍ୟ ହେଉଛି ଦେହାତ୍ମ–ବୁଦ୍ଧିର ସେପାରିରେ ତଥା ଦେହର ଆତ୍ମା ସହିତ ତାଦାତ୍ମ୍ୟ ନ ହେବା । ଦେହକୁ ଜଡ଼ ବନାଇ ବସାଇବାର ଅଭ୍ୟାସ କରିବା ସମାଧି ନୁହେଁ, ଏହା ତ ଗହନ ନିଦ୍ରାରେ, ସୁଷୁପ୍ତି ଅବସ୍ଥାରେ, ବିନା ଚେଷ୍ଟାରେ ପ୍ରତିଦିନ ହେଉଛି । ସେହି ଅବସ୍ଥାରେ ପହଞ୍ଚିଲେ କଲ୍ୟାଣ ହେବ ନାହିଁ ।

ସମାଧି ବିନା ଆମର କୌଣସି ପ୍ରକାର କ୍ରିୟାଗୁଡ଼ିକର ଅସ୍ତିତ୍ୱ ନାହିଁ । ଚିତ୍ରଗୁଡ଼ିକ ଯାଆ–ଆସ କରୁଥିଲେ ବି ପର୍ଦ୍ଦା ବିଦ୍ୟମାନ । ବ୍ୟବହାର ଚିତ୍ରରେ ବି ଅଧିଷ୍ଠାନ ଆତ୍ମା ପର୍ଦ୍ଦା ହିଁ ରହିଛି । ହୁଏତ ତାହା ସୁଷୁପ୍ତି ହୋଇଥାଉ, ସର୍ବଦା ଆତ୍ମାର ଅସ୍ତିତ୍ୱ ରହିଛି ।

ସମାଧି ଆମର ଅସ୍ତିତ୍ୱ । ସମାଧି ଆମର ସ୍ୱଭାବ । ଆମ ସ୍ୱରୂପର କେବେହେଲେ ଅଭାବ ହୋଇପାରିବ ନାହିଁ । ବିକ୍ଷେପରେ ବି ସମାଧି (ଅସ୍ତିତ୍ୱ) ତିଷ୍ଠି ରହିଥାଏ ।

"ମୁଁ ଅଛି" ଏହା ହିଁ ସମାଧି ବା ସାକ୍ଷାତ୍‌କାର । ଆମର ସମସ୍ତ ସାଧନର ଉଦ୍ଦେଶ୍ୟ ହେଉଛି ଚିତ୍ରରେ ଲୁଚିଥିବା ପର୍ଦ୍ଦାରୂପକ ଆତ୍ମାକୁ ପ୍ରକଟ କରିବା । ଅସ୍ତିତ୍ୱକୁ ସ୍ପଷ୍ଟ ଭାବରେ ସ୍ୱୀକାର କରିବା । ଏହା ଆତ୍ମସାକ୍ଷାତ୍‌କାରର ସିଧାସଳଖ ପଦ୍ଧତି । ଯାହାଙ୍କର ଏଥିରେ ପୂର୍ଣ୍ଣଶ୍ରଦ୍ଧା ଅଛି, ତାଙ୍କର ହଠଯୋଗ, ସମାଧି, ନାଡ଼ି ଶୋଧନ, ସହସ୍ରାର ଉପରେ ଏକାଗ୍ରତା, ସୁଷୁମ୍ନା, ପରାନାଡ଼ୀ, କୁଣ୍ଡଳିନୀ, ପ୍ରାଣାୟାମ, ନେତି, ଧୋତି ଅଥବା ଷଟ୍‌ଚକ୍ର ସହିତ କୌଣସି ପ୍ରୟୋଜନ ନାହିଁ ।

ଧ୍ୟାନ, ସମାଧି ଦ୍ୱାରା ଅବଶ୍ୟ ଆନନ୍ଦର ପ୍ରାପ୍ତି ହୁଏ କିନ୍ତୁ ବାସନାଗୁଡିକର, ଭ୍ରାନ୍ତିଗୁଡ଼ିକର ନାଶ ହୁଏ ନାହିଁ । ସମାଧି, ଧ୍ୟାନରୁ ହଟିଗଲା ପରେ ପୁଣି ସଂସାର ଭେଦ ଭଳି ଭାସିବାକୁ ଲାଗିବ, ଯାହା ହେଉଛି ବନ୍ଧନର କାରଣ । ଏହି ବିଚାର ମାର୍ଗ ଦ୍ୱାରା ସହଜ ସମାଧି ପ୍ରାପ୍ତ କରିବା ସର୍ବୋତ୍ତମ ।

**ପ୍ରଶ୍ନ ୫୦– ଅଦ୍ୱୈତ କଥା କହିବା ଏବଂ ଦ୍ରଷ୍ଟା–ଦୃଶ୍ୟର ଭେଦ କରିବା ବିଷୟରେ କାହିଁକି ଶିକ୍ଷା ଦିଆଯାଇଥାଏ ?**

**ଉତ୍ତର –** ଅନେକ ଦୃଶ୍ୟକୁ ଦେଖିଥିବା ଦ୍ରଷ୍ଟା ତ ଏକ, ଯେମିତି ଅନେକ ଶବ୍ଦକୁ ଶୁଣୁଥିବା କାନ ଗୋଟିଏ, ଏବଂ ରୂପକୁ ଦେଖୁଥିବା ଆଖି ଗୋଟିଏ, ଅନେକ ଗନ୍ଧ ଏବଂ ରସକୁ ଜାଣୁଥିବା ନାକ ଏବଂ ଜିଭ ଗୋଟିଏ । ସେହିପରି ଯେତେବେଳେ ସାଧକ ଅନନ୍ତ ଭେଦଭାବରୁ ହଟିଯାଇ ଦ୍ରଷ୍ଟା–ଦୃଶ୍ୟ ରୂପରେ ଆସ୍ଥା କରିନିଏ, ସେତେବେଳେ ସଦ୍‌ଗୁରୁ ତାକୁ ଏହା ନିଶ୍ଚୟ କରାଇ ଦିଅନ୍ତି ଯେ, ଏହା ବି ହେଉଛି ଜାଗ୍ରତ ଅବସ୍ଥାରେ ମନର କଳ୍ପନା, ସୁଷୁପ୍ତିରେ ଦ୍ରଷ୍ଟା–ଦୃଶ୍ୟର ବି ଭେଦ ରହିପାରେ ନାହିଁ । ସ୍ୱପ୍ନର ସାକ୍ଷୀ ହିଁ ସମସ୍ତ ସ୍ୱପ୍ନ ସଂସାର ରୂପ ଧାରଣ କରିଥାଏ, ସେଇଠି ସ୍ୱପ୍ନ ନଗରର ଦୃଶ୍ୟ ଏବଂ ଦେଖୁଥିବା ଦ୍ରଷ୍ଟା ଅଭିନ୍ନ ହୋଇଥାନ୍ତି । ସେହିପରି ଦ୍ରଷ୍ଟା ଏବଂ ଦୃଶ୍ୟ ସ୍ଥୂଳ ଜଗତରେ ବି ଏକ । ଦ୍ରଷ୍ଟା, ଅନ୍ତଃକରଣ ଏବଂ ଦୃଶ୍ୟ ପଦାର୍ଥର ଏକତ୍ୱ ଦ୍ୱାରା ହିଁ ପଦାର୍ଥ ଜ୍ଞାନ ହୋଇଥାଏ ।

ଯଦି ମନୁଷ୍ୟ ନିଜକୁ ଦ୍ରଷ୍ଟା ମାନିନେବାର ଭୁଲ କରିବସିବ ତେବେ ତାଙ୍କୁ ଦୃଶ୍ୟ ନିଶ୍ଚିତ ଭାବରେ ଅଲଗା ପ୍ରତୀତ ହେବ । ଏହା ଅପେକ୍ଷା ସାଧକ ନିଜକୁ ସେହି ପର୍ଦ୍ଦା ବୋଲି ମାନିନେଉ, ଯାହା ଉପରେ ଦ୍ରଷ୍ଟା ଏବଂ ଦୃଶ୍ୟ ପ୍ରଦର୍ଶିତ ହୋଇଥାଏ । ତେବେ ତା'ର ଆଉ କୌଣସି ଭ୍ରମ ହେବନାହିଁ, ନିଜର ଅଖଣ୍ଡ ସତ୍ତା ଉପରେ ଏବଂ ସେ ମନର ଉଦୟ ଅସ୍ତର ପ୍ରକାଶକ, ସାକ୍ଷୀ ମାତ୍ର ହୋଇରହିଯିବ ।

ପର୍ଦ୍ଦା ଉପରେ ଚିତ୍ର ଚାଲିଲା ଭଳି ମନେହୁଏ । ତୁମେ ଯାଇ ତାକୁ ଧରିବାକୁ ଚେଷ୍ଟା କର । କ'ଣ ସିଏ ହାତମୁଠା ଭିତରକୁ ଆସିପାରିବ ? ଆସିବ କେବଳ ପର୍ଦ୍ଦା । ଚିତ୍ର ସରିଗଲା ପରେ ଶେଷରେ କ'ଣ ରହେ ? ସେହି ପର୍ଦ୍ଦା । ଏଇଠି ବି ସେହି କଥା । ଯେତେବେଳେ ଜଗତ ଭାସମାନ ହେଉଅଛି । ମୁଁ'ର ଆଧାରକୁ ଧର । ଆଧାରକୁ ଧରିନେଲା ପରେ ଜଗତ ଭାସମାନ ହେଉଛି ନା ନାହିଁ ? ଏହା ସହିତ ସାକ୍ଷୀର କ'ଣ କିଛି ପାର୍ଥକ୍ୟ ଜଣାପଡୁଛି ? କିଛି ନାହିଁ । ସୁଷୁପ୍ତି ଅବସ୍ଥାରେ ଜଗତ ଭାସମାନ ହୁଏନାହିଁ ଏବଂ ଜାଗ୍ରତ ଅବସ୍ଥାରେ ଜଗତ ଭାସମାନ ହୋଇଥାଏ, ଏହା ସହିତ ଭାସମାନତାର କ'ଣ ତଫାତ୍ ରହିଲା ? କିଛି ନାହିଁ ।

ମନ ଯେଉଁ ଦୃଶ୍ୟ ପଛରେ ଧାଏଁ ସେହି ଦୃଶ୍ୟ ପଦାର୍ଥ ଜଗତ, ମନ ଠାରୁ ଭିନ୍ନ ନୁହେଁ ଏବଂ ଯେଉଁ ସାକ୍ଷୀର ସାକ୍ଷୀତ୍ୱରେ ମନ ଧାଉଁଛି, ସେହି ମନ ସାକ୍ଷୀ ଠାରୁ ଭିନ୍ନ ନୁହେଁ ।

ମହତ୍ତ୍ୱ ସ୍ୱପ୍ନ, ଦୃଶ୍ୟ, ଜଗତ, ପଦାର୍ଥର ନୁହେଁ, ଦ୍ରଷ୍ଟାର । ଦ୍ରଷ୍ଟା ବିନା କୌଣସି ପ୍ରକାର ଦୃଶ୍ୟର ସ୍ଥିତି ନାହିଁ । ଦୃଶ୍ୟ ଆମକୁ ଆସି କହୁନାହିଁ ଯେ ଆମେ ଅଛୁ, ଆମକୁ ଦେଖ, ଧର, ଭୋଗ କର । କିନ୍ତୁ ସେ' ହିଁ ତୁମେ, ଯେ ଏହିପରି କହୁଛି ଯେ ଏହା ହେଉଛି ଦୃଶ୍ୟ । ସେହିପରି ଦୃଶ୍ୟଗୁଡ଼ିକର ଅସ୍ତିତ୍ୱ ଦ୍ରଷ୍ଟାର ଦୃଷ୍ଟିକୋଣ ଉପରେ ନିର୍ଭର କରେ । ଦ୍ରଷ୍ଟା ଠାରୁ ସ୍ୱତନ୍ତ୍ର ଭାବରେ ତାହାର କୌଣସି ଅସ୍ତିତ୍ୱ ନାହିଁ । ଏହା ଅନୁଭବ କର ଯେ ତୁମେ କ'ଣ ? ସେତେବେଳେ ଜାଣିବ ସଂସାର କ'ଣ ? ସତ୍ତାହୀନ ।

## ସ୍ୱାନୁଭବ ପ୍ରକାଶ

**ପ୍ରଶ୍ନ ୫୧– ତୁମର କେହି ଆତ୍ମୀୟଙ୍କର ମୃତ୍ୟୁ ହୋଇଗଲେ ତୁମକୁ ଦୁଃଖ ହେଉଛି ନା ?**

ଉତ୍ତର – ବାଲ୍‌ଟିରେ ପାଣି ଅଛି ଏବଂ ପାଣିରେ ସୂର୍ଯ୍ୟାଭାସ ହେଉଛି । ଯଦି କେହି ବାଲ୍‌ଟିର ପାଣିକୁ ପଥର ଫୋପାଡେ ତେବେ ଜଳାଭାସ ସୂର୍ଯ୍ୟ ହଲଚଲ ହେବାରୁ ଆକାଶରେ ଥିବା ସୂର୍ଯ୍ୟଙ୍କର କଣ ବିକ୍ଷୋଭ ହେବ ? କଦାପି ନୁହେଁ । ସେହିପରି କୌଣସି ଆତ୍ମୀୟଙ୍କର ମୃତ୍ୟୁ ବା ବସ୍ତୁର ହାନି ଯୋଗୁ ଚିଦାଭାସ ଯୁକ୍ତ ଅନ୍ତଃକରଣରେ ବିକ୍ଷୋଭ ହେଉଥିବାରୁ ମୋତେ, ମୋର ଅସଙ୍ଗ ଆତ୍ମାଦେବଙ୍କୁ ଦୁଃଖ ହୋଇପାରିବ ନାହିଁ ।

**ପ୍ରଶ୍ନ ୫୨– ଶରୀରରେ ରୋଗ ହେଲେ ବହୁତ କଷ୍ଟ ହେଉଛି ନା ?**

ଉତ୍ତର – ଘରର ଛାତ, କାନ୍ଥରେ ଫାଟ ଦେଖା ଯାଉଥିଲେ ତା'ର ପ୍ରକାଶକଙ୍କ ପ୍ରକାଶରେ କ'ଣ କ୍ଷତି ହେଉଛି ? ତାଙ୍କର କାମ ହେଉଛି ପ୍ରକାଶ କରିବା କେବଳ । କାନ୍ଥ, ଛାତ ଇତ୍ୟାଦିକୁ ତିଆରି କରିବାର ଦାୟିତ୍ୱ ହେଉଛି ଘର ମାଲିକର । ସେହିପରି ଦେହର ରୋଗ ସାଙ୍ଗରେ ମୋର ଅସଙ୍ଗ ଆତ୍ମାର ସମ୍ବନ୍ଧ କ'ଣ ? ଦେହାଭିମାନୀ ଜୀବ ହିଁ ରୋଗର ଉପଚାର କରିବା ପାଇଁ ଚେଷ୍ଟା କରିଥାଏ ।

**ପ୍ରଶ୍ନ ୫୩– ଦେହ ନାଶ ହେଲେ ତୁମର ନାଶ ହୋଇଯିବ ନା ?**

ଉତ୍ତର – ଘର ନଷ୍ଟ ହୋଇଗଲେ ଆକାଶ କେବେ ନାଶ ହୁଏ ନାହିଁ । ଆକାଶ ଅସଙ୍ଗ । ସେହିପରି ମୁଁ ଅସଙ୍ଗ ଆତ୍ମା, ଦେହର ଷଡ଼ ବିକାରଗୁଡ଼ିକ ସହିତ ଅଲିପ୍ତ ।

**ପ୍ରଶ୍ନ ୫୪– କ'ଣ ବୁଦ୍ଧି ଆତ୍ମା ଅଟେ, କାରଣ ସେ ସବୁକୁ ଜାଣେ ?**

**ଉତ୍ତର –** ନାଁ, ବୁଦ୍ଧି ଉପରେ 'ମୁଁ' ଆତ୍ମା ଆରୂଢ଼ ହୋଇ ବୁଦ୍ଧି ଏବଂ ସବୁ ଦେହସଂଘାତକୁ ପ୍ରକାଶିତ କରିଥାଏ । ମୋର ଘଟ ଭଳି ମୋର ବୁଦ୍ଧି ମମତାର ବିଷୟ ହୋଇଯାଏ । ଯେ ମମତାର ବିଷୟ ହୁଏ, ସେ କେବେହେଲେ ମୁଁ ହୋଇପାରିବ ନାହିଁ । ଏଣୁ ବୁଦ୍ଧି ମମତାର ବିଷୟ ହୋଇଥିବାରୁ ଜଡ଼ । ଯେଉଁ ଯେଉଁ ପଦାର୍ଥ ଇଦଂ ରୂପରେ ପରପ୍ରକାଶ୍ୟ ହୋଇଥାଏ ସେସବୁ ଜଡ଼ ।

**ପ୍ରଶ୍ନ ୫୫– ତେବେ କଣ ଆତ୍ମା ସବୁ ଜାଣିଥାଏ ?**

**ଉତ୍ତର –** ଆତ୍ମାର ସାମାନ୍ୟ ଏବଂ ବିଶେଷ ଭାବରେ ଦୁଇଟି ରୂପ ଅଛି । ଯେମିତି ଦିଆସିଲିରେ ଅଗ୍ନିର ସାମାନ୍ୟ ଏବଂ ବିଶେଷ ଦୁଇଟି ରୂପ ଥାଏ । ସାମାନ୍ୟ ରୂପରେ ଅଗ୍ନି କାହାକୁ ଜଳାଏ ନାହିଁ କିନ୍ତୁ ଘର୍ଷଣ ଦ୍ୱାରା ଉତ୍ପନ୍ନ ଅଗ୍ନି ହିଁ ଜଳାଇଥାଏ । ସେହିପରି ଆତ୍ମାର ସାମାନ୍ୟ ସ୍ୱରୂପ କୌଣସି ପଦାର୍ଥକୁ ଜାଣେ ନାହିଁ ବରଂ ଆଭାସ ସହିତ ବୁଦ୍ଧି ମୋର ଆତ୍ମା ଦ୍ୱାରା ଦ୍ୱୈତର କର୍ତ୍ତାପଣିଆ କରିଥାଏ ଏବଂ ସମସ୍ତ ପଦାର୍ଥକୁ ଜାଣିଥାଏ । ଆତ୍ମା, ମୁଁ ହିଁ ଅଦ୍ୱୈତ ଏହାକୁ ଜାଣିବା ଦ୍ୱୈତ ଦ୍ୱାରା ହୋଇଥାଏ ।

**ପ୍ରଶ୍ନ ୫୬– ଯଦି ତୁମେ ଆତ୍ମା ସବୁ ଶରୀରରେ ବିଦ୍ୟମାନ, ତେବେ ମୋର ମନରେ କ'ଣ କ'ଣ ବିଚାର ଚାଲିଛି କହିଦିଅ ?**

**ଉତ୍ତର –** ବିଜୁଳୀ ସବୁ ଘରେ ଏକ ଏବଂ ସବୁ ଘରର ଖର୍ଚ୍ଚ ବତାଉଥିବା ଅଭିମାନୀ ମିଟର ସେହି ଘରେ ଲଗାଯାଇଛି । ଯିଏ ଘରର ଖର୍ଚ୍ଚ ଜାଣେ ସେଠାକାର ମିଟର ତାହା ବତେଇଥାଏ, ବିଜୁଳି ନୁହେଁ । ସେହିପରି ଆତ୍ମା ସବୁ ଶରୀରରେ ଗୋଟିଏ ହୋଇଥିଲେ ବି ଶରୀରରେ ତାହାର ଅଭିମାନୀ ବୁଦ୍ଧିରେ ପଡି ଚିଦାଭାସ ଜୀବ ଭାବରେ ଥାଏ, ସେ ନିଜର ଶରୀର ଇନ୍ଦ୍ରିୟ, ପ୍ରାଣ, ମନ, ବୁଦ୍ଧି ଇତ୍ୟାଦି ଅବସ୍ଥାଗୁଡ଼ିକୁ ଜାଣିଥାଏ ।

ଯେମିତି ବିଜୁଳୀ ସବୁ ଘରର ପ୍ରକାଶକାରୀ ତାହା ବିନା କୌଣସି କାର୍ଯ୍ୟ ସିଦ୍ଧ ହୋଇପାରେ ନାହିଁ, ସେହିପରି ସବୁ ଶରୀରର ପ୍ରକାଶକ ହିଁ ମୁଁ ଏବଂ ପ୍ରତ୍ୟେକ ଶରୀର ଅଭିମାନୀ ନିଜ-ନିଜକୁ ଦେହ ସଂଘାତକ ଜ୍ଞାନ କରାଇଥାଏ ।

ଶରୀରର ଅବସ୍ଥା ବତାଉଥିବା ବାଣୀ ଏବଂ ଜାଣିବାବାଲା ସେହି ଶରୀରରେ ରହୁଥିବା ବୁଦ୍ଧି ଥାଏ ଏବଂ ମୁଁ ହେଉଛି ବୁଦ୍ଧି ଏବଂ ବାଣୀର ବି ପ୍ରକାଶକ । ଯଦି ମୁଁ ନ ରହିବି, ତେବେ ବାଣୀ, ମନ, ବୁଦ୍ଧି କିଛି ହେଲେ କରିପାରିବେ ନାହିଁ । ଏଣୁ ମୁଁ ହିଁ ସର୍ବପ୍ରକାଶକ, ସ୍ୱତଃସିଦ୍ଧ, ସ୍ୱୟଂପ୍ରକାଶ ଏବଂ ମୋର ଉପସ୍ଥିତିରେ ହିଁ

ସମସ୍ତ ଦେହାଭିମାନୀ ଜୀବ ନିଜ-ନିଜ ଶରୀରର କାର୍ଯ୍ୟ ଭାର ସମ୍ଭାଳି ଚାଲିଥାନ୍ତି । ମୁଁ କେବଳ ସାକ୍ଷୀ, ଉପଦ୍ରଷ୍ଟା ମାତ୍ର ହୋଇ ରହିଥାଏ ।

**ପ୍ରଶ୍ନ ୫୭- ସମାଧି ଦ୍ୱାରା କଲ୍ୟାଣ ହେବ ?**

ଉତ୍ତର - ବାଲ୍‌ଟିର ପାଣିରେ ପଡିଥିବା ସୂର୍ଯ୍ୟଙ୍କ ପ୍ରତିବିମ୍ବରେ ଚଞ୍ଚଳତା ଦେଖାଦେଲେ ସୂର୍ଯ୍ୟଙ୍କ ଠାରେ କୌଣସି ପ୍ରକାର ବିକାର, ହଲଚଲ ହୁଏ ନାହିଁ, କାରଣ ସୂର୍ଯ୍ୟଙ୍କ ଧର୍ମ ହେଉଛି ଅଚଳ ରହିବା । ପ୍ରତିବିମ୍ବ କେବେ ହେଲେ ଜଳରେ ଅଚଳ ରହିପାରିବ ନାହିଁ । ସେହିପରି ସାଭାସ ବୁଦ୍ଧି ଗୁଡ଼ିକରେ ବିକ୍ଷେପ ହେଉଛି ତ ତାକୁ ହିଁ ଅଚଳ ହେବାକୁ ହେବ କିନ୍ତୁ ମୋର ସାକ୍ଷୀରେ କୌଣସି ବିକ୍ଷେପ ନାହିଁ । ସେଥିପାଇଁ ସମାଧି, ଧ୍ୟାନର ବି ଆବଶ୍ୟକତା ନାହିଁ । ବାଲ୍‌ଟିର ପାଣିରେ ଆଭାସ ବଦ୍ଧ ହୋଇଛି, ପ୍ରକାଶକ ସୂର୍ଯ୍ୟ ନୁହନ୍ତି । ତା'ର ମୁକ୍ତ ହେବାର ଜିଜ୍ଞାସା ବି ହୋଇପାରିବ ନାହିଁ, ଯେ ସଦାମୁକ୍ତ । ସେହିପରି ଚିଦାଭାସ ବୁଦ୍ଧି (ଜୀବ)ରେ ହିଁ ବନ୍ଧନର ଭ୍ରମ ସୃଷ୍ଟି ହୁଏ । ତାହାର ମୁକ୍ତି ପାଇଁ ଇଚ୍ଛା ଏବଂ ପ୍ରୟାସ ଆବଶ୍ୟକ । ସେହି ଜୀବ ହିଁ ସମାଧି ଦ୍ୱାରା ନିନଜ ବନ୍ଧନର ଭ୍ରମକୁ ତ୍ୟାଗକରି ନିଜର ସ୍ୱତଃସିଦ୍ଧ କଲ୍ୟାଣ ସ୍ୱରୂପକୁ ଗ୍ରହଣ କରୁ, ଅର୍ଥାତ ଆଭାସ ନିଜେ ନିଜକୁ ଆତ୍ମରୂପ ବୋଲି ବୁଝୁ, ଯାହା ତାହାର ବାସ୍ତବ ସ୍ୱରୂପ । ତାକୁ ଜାଣି ଜୀବ ମୁକ୍ତି ପ୍ରାପ୍ତ ହୋଇଥାଏ । ମୁଁ ଆତ୍ମା ତ ସମାଧି ବିକ୍ଷେପର ପ୍ରକାଶକ, ଅସଙ୍ଗାତ୍ମା । ମୋର ସମାଧି ଅନାବଶ୍ୟକ ।

**ବନ୍ଧଂନ ମୁକ୍ତି ଚିଦାନନ୍ଦ ରୂପଃ ଶିବୋଽହମ୍ ଶିବୋଽହମ୍ ।**

**ପ୍ରଶ୍ନ ୫୮- କ'ଣ ବିଦେଶ ଯିବାକୁ ଚାହୁଁଛ ?**

ଉତ୍ତର - ଘଟରେ ମହାକାଶ କ'ଣ ପ୍ରଥମରୁ ବିଦ୍ୟମାନ ନାହିଁ । କଣ ମହାକାଶର ଗମନାଗମନ ସମ୍ଭବ ? ପ୍ରତ୍ୟେକ ଘଟ, ମଠରେ ମହାକାଶ ପ୍ରଥମରୁ ହିଁ ଭିତରେ ବାହାରେ ସର୍ବତ୍ର ପରିପୂର୍ଣ୍ଣ । ସେଥିପାଇଁ କୌଣସି ବିଶେଷ ଘଟକୁ ଯିବା ସମ୍ଭବ ହୋଇପାରିବ ନାହିଁ । ସେହିପରି ଆତ୍ମଦେବ 'ମୁଁ' ସର୍ବତ୍ର ପରିପୂର୍ଣ୍ଣ । ମୋର ଯିବା ଆସିବା ସମ୍ଭବ ନୁହେଁ । ଦେହ କେବଳ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ନେଇ ଯାଇପାରେ, ପୂର୍ଣ୍ଣ ଆକାଶ ନୁହେଁ । ସେଥିପାଇଁ ବିଦେଶ ଯିବାର କାମ ଶରୀରର ଏବଂ ସେଥିରେ ବିଦ୍ୟମାନ ଜୀବ ହିଁ ଏହି କାର୍ଯ୍ୟ କରିପାରେ । ମୋର ଆତ୍ମା ପାଇଁ କିଛି କରିବାର ନାହିଁ ।

**ପ୍ରଶ୍ନ ୫୯- ଥକିଯାଇଛ ବିଶ୍ରାମ କର ।**

ଉତ୍ତର - ମୁଁ ତ ବିଶ୍ରାମର ସାଗର । ସବୁ ନଦୀଗୁଡ଼ିକ ମୋଠାରେ ବିଶ୍ରାମ ନେଇଥାନ୍ତି । ବୃତ୍ତିରୂପକ ନଦୀମାନେ ଚାଲୁ-ଚାଲୁ, ବୋହୁ-ବୋହୁ ଯେତେବେଳେ ଥକିଯାଆନ୍ତି,

ସେତେବେଳେ ମୋର ଆନନ୍ଦ ସାଗରରେ ବୁଡ଼ିଯାଇ ଲୀନ ହୋଇ ବିଶ୍ରାମ ନେଇଥାନ୍ତି । ସମୁଦ୍ରକୁ ବିଶ୍ରାମର ଆବଶ୍ୟକତା ନାହିଁ । ସେ ତ ନିଜ ସ୍ୱରୂପରେ, ନିଜର ମହିମାରେ ଅଚଳ ରହିଥାଏ । ମୁଁ ଆନନ୍ଦଦାତା, ଆନନ୍ଦର ଭିକାରୀ ନୁହେଁ । ମନୋବୃତ୍ତି, ଚିତ୍ତବୃତ୍ତି ହିଁ ଭିକାରୀ । ସେମାନେ ସମାଧି, ଧ୍ୟାନରୂପକ ଭିକ୍ଷାବୃତ୍ତି ପାଇଁ ତତ୍ପର ହୋଇ ମୁଁ, ଆନନ୍ଦଦାତାଙ୍କ ଦୁଆରରେ ଶରଣ ନେଇଥାନ୍ତି ।

**ପ୍ରଶ୍ନ ୬୦– ତୁମେ ଅଲାଜୁକ ?**

**ଉତ୍ତର** – ଯେତେବେଳେ ଠିକ୍ କୌଣସି ଅନ୍ୟ ଘର ବା ବାଥରୁମ୍ ମୁଁ ନୁହେଁ, ସେତେବେଳେ ଲୋକ ଲାଜ କରିବ କାହାକୁ ? ସେହିପରି 'ମୋ ଛଡ଼ା ଏଇଠି ଅନ୍ୟ କିଛି ନାହିଁ ।' ଶ୍ରୁତି ଏଇଭଳି କହିଥାଏ ।

**"ଏକମେବା ଦ୍ୱିତୀୟ ବ୍ରହ୍ମ, ନେହ ନାନାସ୍ତି କିଞ୍ଚନ୍"**

ତେବେ ମୁଁ କାହାକୁ ଲାଜ କରିବି ।

**ପ୍ରଶ୍ନ ୬୧– ତୁମେ ବଡ ଜିଦ୍‌ଖୋର ?**

**ଉତ୍ତର** – ପୁରାପୂରି ଠିକ୍ । ମୁଁ କୂଟସ୍ଥ ଆତ୍ମା । ଅନାଦି କାଳରୁ ମୋର ସହାୟତାରେ, ମୋର ଶକ୍ତି ପାଇ ମନର ବିକାର ହେଉଅଛି କିନ୍ତୁ ମୋର ସାକ୍ଷୀ ସ୍ୱରୂପରେ କେତେବେଳେ କୌଣସି ପରିବର୍ତ୍ତନ ହୋଇନାହିଁ । ମନ ହିଁ ଉଚ୍ଚ–ନୀଚ କର୍ମଯୋଗୁ ୮୪ ଲକ୍ଷ ଯୋନୀ ଗୁଡିକରେ ଭ୍ରମଣକରି ସୁଖ–ଦୁଃଖ ଭୋଗ କରୁଛି । ମୋର ଆଧାରରେ ହିଁ ଅନେକ ସଂକଳ୍ପ–ବିକଳ୍ପ, ଚିନ୍ତା, ହର୍ଷ, ଶୋକ, ରାଗ–ଦ୍ୱେଷ, ଭୟ, ମୋହର ପ୍ରହାର ହୋଇ ଚାଲିଥାଏ ମାତ୍ର ମୁଁ କୂଟସ୍ଥ, ଏକରସ ହୋଇ ରହିଥାଏ କାରଣ ମୁଁ ହେଉଛି ଅଚଳ, ଏକରସ ।

**ପ୍ରଶ୍ନ ୬୨– ତୁମେ ଅଳସୁଆ ।**

**ଉତ୍ତର** – ପୂରାପୂରି ଠିକ୍ । ଘରେ ଲୋକ କାମ କରନ୍ତି । ଆଲୋକ କିଛି କାମ କରେ ନାହିଁ । କାମ କରୁଥିବା ଦେହ ହେଉଛି ଅଭିମାନୀ ଜୀବ । ସର୍କସର ଖେଳରେ ଦର୍ଶକ କ'ଣ କିଛି କାମ କରେ ? ଦର୍ଶକ ତ କେବଳ ଖେଳର ସାକ୍ଷୀ ହୋଇ ରହିଥାନ୍ତି । ସେହିପରି ମନ, ଇନ୍ଦ୍ରିୟ, ପ୍ରାଣ ଦ୍ୱାରା କ୍ରିୟା ହେଉଅଛି । ସମସ୍ତ ବ୍ୟବହାର ଦେହ ସଂଘାତ ଦ୍ୱାରା ହୋଇ ଚାଲିଥାଏ, ମୁଁ ତ ହେଉଛି ଆଲୋକ ଭଳି ଅକ୍ରିୟ, ଅସଙ୍ଗ ।

**ପ୍ରଶ୍ନ ୬୩– ଟ୍ରେନ୍‌ରୁ ତୁମର ଆଟେଚୀ ଚୋରି ହେବା କଥା ଶୁଣି ମୋତେ ବହୁତ ଦୁଃଖ ହେଲା ।**

**ଉତ୍ତର** – ସମୁଦ୍ରରେ ଅନେକ ଫେଣ, ତରଙ୍ଗ, ପାଣିଫୋଟକା ଥାଉ ଏବଂ ସିଏ ଶାନ୍ତ ହୋଇଯାଉ, ଏଥିରେ ଜଳର କ'ଣ ହାନି ବା ଲାଭ ହେବ ? ସମୁଦ୍ର ଜଳ ତ

ସବୁବେଳେ, ନିଜର ମହିମାରେ ହିଁ ବିରାଜମାନ । ସେହିଭଳି ସାଂସାରିକ ପଦାର୍ଥ, ଆତ୍ମଦେବ-ମୋ ଠାରେ କଳ୍ପିତ ତରଙ୍ଗ ମାତ୍ର । ଯଦି ଏହି ବୈଭବ ତିଷ୍ଠି ରହିଲା ତେବେ ମୋର କୌଣସି ଗୌରବ ନାହିଁ ଏବଂ ବୈଭବ ନଷ୍ଟ ହୋଇଗଲେ ବି ମୋର କୌଣସି ହାନି ନାହିଁ ।

**ପ୍ରଶ୍ନ ୬୪– ତୁମେ କ'ଣ ମୋର ପିଛା ଛାଡିବ ନାହିଁ ?**

ଉତ୍ତର – ଯଦି ସୂତା ନ ରହେ, ତେବେ ପୁଣି ଫୁଲମାଳାର ଫୁଲ କେଉଁଠି ରହିବ ? ସୂତାକୁ ଆଶ୍ରୟ କରି ତ ସବୁ ଫୁଲ ରହିପାରିଛି । 'ମୁଁ ରହିବି ନାହିଁ' ଏହା ତ ସମ୍ଭବ ନୁହେଁ । ହଁ, ଯଦି ମୁଁ ନିଜର ସତ୍ତାକୁ ତୁମର ସମସ୍ତ ଦୃଶ୍ୟ ଠାରୁ ବାହାର କରିନିଏ, ତେବେ ସବୁ ଦିଗରୁ ପ୍ରଳୟ ହୋଇଯିବ, ଯେମିତି କାରଖାନା, ନଗର, ଘର ଠାରୁ ବିଜୁଳୀ ନିଜ ସତ୍ତାକୁ ଟାଣିନେଲେ ସବୁ ଦିଗରେ ଅନ୍ଧକାର, ପ୍ରଳୟ ହୋଇଯାଏ ।

**ପ୍ରଶ୍ନ ୬୫– ଯେତେବେଳେ ଶରୀର ଜଳାଇ ଦିଆଯିବ ସେତେବେଳେ ତ ତୁମେ ନଷ୍ଟ ହୋଇଯିବ ?**

ଉତ୍ତର– ଘର ନଷ୍ଟ ହେଲେ ଆକାଶ ନଷ୍ଟ ହୁଏ ନାହିଁ । ସେହିପରି ଦେହ ନଷ୍ଟ ହେଲେ ମୋର ଆତ୍ମାର ନାଶ ହୁଏନା ।

**ପ୍ରଶ୍ନ ୬୬– ତୁମେ ଜଡ଼ ?**

ଉତ୍ତର– ସମସ୍ତ ଦୃଶ୍ୟର ପ୍ରକାଶକାରୀ ମୁଁ ଜଡ଼ ହୋଇପାରିବି ନାହିଁ । ଜଡ଼କୁ ପ୍ରକାଶିତ କରୁଥିବା ମୁଁ ହେଉଛି ସ୍ୱୟଂଜ୍ୟୋତି, ସ୍ୱୟଂପ୍ରକାଶ ଚୈତନ୍ୟ ଆତ୍ମା ।

**ପ୍ରଶ୍ନ ୬୭– ଇନ୍ଦ୍ରିୟଗୁଡ଼ିକ ଆତ୍ମା ଅଟନ୍ତି ?**

ଉତ୍ତର– ଘରର ଝରକା ବାହାରର କୌଣସି ଘଟଣା, ବ୍ୟକ୍ତି, ବସ୍ତୁକୁ ଜାଣେ ନାହିଁ ବରଂ ଘରର ମାଲିକ ହିଁ ତାହା ଜାଣିଥାନ୍ତି । ଝରକା ତ ହେଉଛି ସେହି ମାଲିକଙ୍କର ଦେଖିବା, ନିରୀକ୍ଷଣ କରିବାର ଦ୍ୱାର ମାତ୍ର । ସେହିପରି ଦେହର ସ୍ୱାମୀ, ଜ୍ୟୋତିଗୁଡ଼ିକର ଜ୍ୟୋତି, ନିଜର ଜ୍ଞାନ ଜ୍ୟୋତି ଦ୍ୱାରା ପଞ୍ଚ ଇନ୍ଦ୍ରିୟ ଦ୍ୱାର ରୂପକ ଝରକା ଦ୍ୱାରା ସବୁ କିଛି ଦେଖିଥାନ୍ତି । ଇନ୍ଦ୍ରିୟଗୁଡ଼ିକ ତ ମମତାର ବିଷୟ ହୋଇଥିବାରୁ ଜଡ଼, ଯେମିତି ମୋର ଆଖି, ମୋର କାନ, ମୋର ନାକ... ଇତ୍ୟାଦି ।

**ପ୍ରଶ୍ନ ୬୮– ଯଦି ଜଗତ ନାହିଁ ତେବେ ଭାସୁଛି କାହିଁକି ?**

ଉତ୍ତର– ସ୍ୱପ୍ନ ନଥାଇ, ରଜ୍ଜୁରେ ସର୍ପ ନଥାଇ, ଆକାଶରେ ଇନ୍ଦ୍ରଧନୁ ନଥାଇ, ମରୁଭୂମିରେ ଜଳ ନଥାଇ, କଟା ହୋଇଥିବା ବୃକ୍ଷରେ ଭୂତ ନଥାଇ, ଜଳରେ ଓଲଟା ପୁରୁଷ

ନଥାଇ ବି, ପୃଥିବୀ–ଆକାଶର ମିଳନ ନ ହେଉଥିଲେ ବି, ରେଳ ଲାଇନର ମିଳନ ନ ହେଉଥିଲେ ବି, ପାଣି ପାତ୍ରରେ କାଠ, ଲୁହାରଡ଼ ବଙ୍କା ନ ହୋଇଥିଲେ ବି ଯେମିତି ଦେଖାଯାଏ, ଅନ୍ଧକାର ଯୋଗୁ ଦଉଡ଼ିରେ ସର୍ପ ଭଳି ଅଜ୍ଞାନ ଯୋଗୁ ଆତ୍ମାରେ ଜଗତ ଭାସମାନ ହୋଇ ଚାଲିଥାଏ କିନ୍ତୁ ବିଚାର ସମୟରେ ସ୍ୱପ୍ନ ଏବଂ ଜଗତର ସତ୍ତା ହିଁ ରହେନାହିଁ ।

**"ସର୍ବମ୍ ଖଲ୍ୱିଦମ୍ ବ୍ରହ୍ମ"**

ସେହିପରି ତିନୋଟି ଅବସ୍ଥା ବି ଆତ୍ମାରେ କଳ୍ପିତ, ଯେମିତି ଦଉଡ଼ିରେ ସର୍ପ କଳ୍ପିତ ହୋଇଥାଏ । ଦୀପ ସଡ଼କ ଉପରେ ଚାଲୁଥିବା ସମସ୍ତ ଯାତାୟାତକୁ ପ୍ରକଶିତକରି ଚାଲିଥାଏ, ସେହିପରି ଅଖଣ୍ଡ ଜ୍ଞାନ– ଆଲୋକ ସମଗ୍ର ବୃତ୍ତି ଏବଂ ଅବସ୍ଥାଗୁଡ଼ିକୁ ପ୍ରକାଶିତ କରିଥାଏ ।

**ପ୍ରଶ୍ନ ୬୯– ଅନ୍ତଃକରଣରେ ହିଁ ସର୍ବବ୍ୟାପକ ପରମାତ୍ମାଙ୍କ ଦର୍ଶନ କାହିଁକି ହୁଏ ଅନ୍ୟତ୍ର କାହିଁକି ହୁଏନା ?**

**ଉତ୍ତର–**ପୃଥିବୀର ଶୁଦ୍ଧ ଅଂଶ ଦର୍ପଣ, ତେଲ ବା ଜଳରେ ହିଁ ପ୍ରତିବିମ୍ବିତ ମନୁଷ୍ୟ, ଗଛ, ପଶୁ, ପକ୍ଷୀଙ୍କୁ ଧରିପକାଏ, ପଥର, କାଠ, କାଗଜ, କାନ୍ଥକୁ ନୁହେଁ । ସେହିପରି ସତ୍ତ୍ୱଗୁଣର କାର୍ଯ୍ୟ ଅନ୍ତଃକରଣର ଶୁଦ୍ଧି ଯୋଗୁ ହିଁ ସେଇଠି ଅନୁଭବ ହୋଇଥାଏ ଅନ୍ୟସବୁ ଅସ୍ତି, ଭାତି, ପ୍ରିୟ ରୂପରେ ବିଦ୍ୟମାନ ହେଉଥିଲେ ବି ଅନୁଭବ ଆତ୍ମାର ନିକଟତମ ସ୍ଥାନ ମନରେ ହିଁ ହୋଇଥାଏ ।

**ପ୍ରଶ୍ନ ୭୦– ଜୀବର ସ୍ୱରୂପ କ'ଣ ?**

**ଉତ୍ତର–** କ'ଣ ପ୍ରତିବିମ୍ବର ସ୍ୱରୂପ ବିମ୍ବଠାରୁ ଭିନ୍ନ ହୋଇପାରିବ ? ଯେମିତି ଜଳ ବା ଦର୍ପଣରେ ସୂର୍ଯ୍ୟ ବା ମନୁଷ୍ୟର ଦେଖାଦେଉଥିବା ପ୍ରତିବିମ୍ବ, ସୂର୍ଯ୍ୟ ବା ମନୁଷ୍ୟର ବିମ୍ବ ଠାରୁ ଭିନ୍ନ ନୁହେଁ । ସତ୍ୟ ତ ହେଉଛି ମାନବ ବା ସୂର୍ଯ୍ୟ । ସେହିପରି ବୁଦ୍ଧି ଭିତରେ ଯେଉଁ କୂଟସ୍ଥ ମୋର ଆତ୍ମାର ଆଭାସ (ଚିଦାଭାସ) ପଡୁଛି ତାହା ବାସ୍ତବରେ ନିଜଠାରୁ ଭିନ୍ନ ସତ୍ତା ରଖେନାହିଁ ଏବଂ ଅନ୍ତଃକରଣ ସହିତ କଳ୍ପିତ ସ୍ୱରୂପ–ଅଧ୍ୟାସ ହୋଇଥିବାରୁ ସୁଖୀ–ଦୁଃଖୀ, କର୍ତ୍ତା–ଭୋକ୍ତା ଭଳି ପ୍ରତୀତ ହୁଏ । ତାହାକୁ ଜୀବ କୁହାଯାଏ । ମାତ୍ର ଏହା ହେଉଛି ଭ୍ରମ । ବାସ୍ତବରେ ତ ଜୀବ ହିଁ ବ୍ରହ୍ମସ୍ୱରୂପ ।

**'ଜୀବୋ ବ୍ରହ୍ମୈବ ନା ପରଃ'**

**ପ୍ରଶ୍ନ ୭୧– ଶୁଣୁଛି ତୁମକୁ ଆଘାତ ଲାଗିଛି ?**

ଉତ୍ତର– ଯଦି ଘରକୁ କେହି ଟେକା ପକାଏ ତେବେ କ'ଣ ତାହାର ପ୍ରକାଶକ ଅସଂଗ ଆଲୋକକୁ ବି ଆଘାତ ଲାଗିବ ? ସେହିପରି ଶରୀର ଉପରେ ଆଘାତ ଲାଗିଲେ ଅସଙ୍ଗ ମୁଁ, ଆତ୍ମାର କୌଣସି ଆଘାତ, ହାନି ହୋଇପାରିବ ନାହିଁ ।

ଏକମାତ୍ର ଇନ୍ଦ୍ରିୟ ନଥିଲେ ପ୍ରକାଶକର କୌଣସି ହାନି ହୁଏନା । ଇନ୍ଦ୍ରିୟଗୁଡ଼ିକ ତ ଝରକା, ଯେଉଁଥିରେ ଜୀବାତ୍ମା ବାହାରକୁ ଦେଖି ଚାଲିଥାଏ ।

**ଇନ୍ଦ୍ରିୟନ ଦ୍ୱାର ଝରୋଖା ନାନା**
**ତହ ସୁରକରି ବୈଠେ ଥାନା ।**

ରାମ ଝରକାରେ ବସି ସମସ୍ତଙ୍କର ହିସାବ ରଖୁଛି । ସ୍ୱୟଂ ପ୍ରକାଶ ସାକ୍ଷୀ ଆତ୍ମା ତ ହେଉଛି ଇନ୍ଦ୍ରିୟଙ୍କ ଭାବ–ଅଭାବ–ଉଭୟ ଅବସ୍ଥାର ପ୍ରକାଶକ ।

**ପ୍ରଶ୍ନ ୭୨– ତୁମେ ପାପୀ ନା ପୁଣ୍ୟାତ୍ମା ?**

ଉତ୍ତର– ସୂର୍ଯ୍ୟଙ୍କ ଆଲୋକରେ କୌଣସି ଯଜ୍ଞ, ପୂଜାପାଠ, ଦାନ କର ବା ଚୋରୀ, ହତ୍ୟା, ଜୁଆ, ବ୍ୟଭିଚାର କର ସୂର୍ଯ୍ୟଙ୍କୁ କୌଣସି ପ୍ରକାର ପୁଣ୍ୟ–ପାପ ସ୍ପର୍ଶ କରିପାରିବ ନାହିଁ । ସେହିପରି ମୋର ଆତ୍ମାର ଆଲୋକରେ ଅହଂକାରୀ ମନ ଭଲ–ମନ୍ଦ କର୍ମ କରିବ ତ ସେ ସେହି କର୍ମଗୁଡ଼ିକର ଫଳ ସ୍ୱରୂପ ସୁଖ–ଦୁଃଖ ଭୋଗ କରିବ । ମୁଁ ସାକ୍ଷୀ, ଅସଙ୍ଗ ।

**ପ୍ରଶ୍ନ ୭୩– ତୁମର ଜାତି କ'ଣ ?**

ଉତ୍ତର– ଫୁଲ, ଅନେକ ନାମ, ଜାତି, ରଂଗ, ସୁଗନ୍ଧର ହୋଇଥାଏ କିନ୍ତୁ ଫୁଲକୁ ଧାରଣ କରୁଥିବା ସୂତାର କୌଣସି ଜାତି ନଥାଏ । ସେହିପରି ମୁଁ, ଆତ୍ମା ସୂତ୍ରର ଆଧାର ଦ୍ୱାରା ସାରା ବ୍ରହ୍ମାଣ୍ଡର ଶରୀର ରହିଛି । ମୋର କୌଣସି ଜାତି ନାହିଁ ।

**ପ୍ରଶ୍ନ ୭୪– ତୁମେ କେବେ ଜନ୍ମ ହୋଇଥିଲ ?**

ଉତ୍ତର– ଘରର ଉତ୍ପତ୍ତି ଦ୍ୱାରା ଆକାଶର ଉତ୍ପତ୍ତି ହୁଏନା । ସେହିପରି ମାୟାର କାର୍ଯ୍ୟ ଶରୀର ଉତ୍ପତ୍ତି ପାଇଁ ସମୟ ତ ଥାଏ କିନ୍ତୁ ମୁଁ ନିତ୍ୟ ଆତ୍ମା, ଅଜନ୍ମା ଆତ୍ମାର ଉତ୍ପତ୍ତି କେବେହେଲେ ହୁଏନାହିଁ କାରଣ ମୁଁ ନିର୍ବିକାର । ଷଡ଼ବିକାର ଦେହର ଥାଏ ।

**ପ୍ରଶ୍ନ ୭୫– ତୁମର ଦେଶ କ'ଣ ?**

ଉତ୍ତର–ପରିଚ୍ଛିନ୍ନ ପଦାର୍ଥରେ ହିଁ ଦେଶ ଥାଏ, ଅପରିଚ୍ଛିନ୍ନ ଆକାଶର ନିଜର କୌଣସି ଅଲଗା ଦେଶନାହିଁ । ସମସ୍ତ ଦେଶ, କାଳ, ବସ୍ତୁ ପରିଚ୍ଛେଦ ରହିତ ମୁଁ ହେଉଛି ଅଖଣ୍ଡ ବ୍ୟାପକ ଆତ୍ମା ।

**ପ୍ରଶ୍ନ ୭୬– ତୁମର ପିତାମାତା କିଏ ?**

ଉତ୍ତର–ଘରର କର୍ତ୍ତା କୁମ୍ଭାର ହୋଇଥିବାରୁ ଘରର ଉତ୍ପତ୍ତି ହୋଇଥାଏ, ଆକାଶର ନୁହେଁ । ଘରର ନାଶ ହେଲେ ଆକାଶର ନାଶ ହୁଏନା । ସେହିପରି ଦେହର ପିତାମାତା ତ ଅଛନ୍ତି, କାରଣ ଏହି ଦେହ ଉତ୍ପତ୍ତି ନାଶବାନ ହୋଇଥାଏ, କିନ୍ତୁ ଆକାଶ ଭଳି ଆତ୍ମଦେବ, ଯାହା ମୋର ସ୍ୱରୂପ, ତାହାର କେବେହେଲେ କାହାଦ୍ୱାରା ଉତ୍ପତ୍ତି ହୋଇନାହିଁ । ସେଥିପାଇଁ ମୁଁ ଅଜନ୍ମାର କୌଣସି ପିତାମାତା, ବନ୍ଧୁ, ସଖା ନାହାନ୍ତି ।

ଦେହ-ରୂପକ ପୁଷ୍ପ, ଆତ୍ମା-ରୂପକ ସୂତ୍ରର ଆଧାରରେ ରହିଛି । ପୁଷ୍ପ ଫୁଟି ଉଠୁଛି, ଶୁଖିଯାଉଛି, ଝଡ଼ିପଡୁଛି କିନ୍ତୁ ସୂତ୍ର ଯେମିତି କି ସେମିତି ଏକରସ ରହିଥାଏ । ସେହିପରି ଦେହ ପୁଷ୍ପଗୁଡ଼ିକର ବଢ଼ିବା କମିବା ହୋଇଥାଏ କିନ୍ତୁ ମୁଁ ଏକରସ ରହିଥାଏ ।

**ପ୍ରଶ୍ନ ୭୭– କେହି କାହାର ମନକୁ ଜାଣିପାରେ ?**

ଉତ୍ତର–ଅସାଧାରଣ ଶକ୍ତିଗୁଡ଼ିକ, ସିଦ୍ଧିଗୁଡ଼ିକ ପରମାତ୍ମାଙ୍କ ମାର୍ଗରେ ସହାୟକ ହେବା ଅପେକ୍ଷା ଅଧିକତର ବାଧା ସୃଷ୍ଟି କରନ୍ତି । ମୃତ ବିଷୟରେ ପଚାରିବା, ବା ମୃତ୍ୟୁପରେ ଜୀବ କେମିତି ଯାଏ, କୁଆଡ଼େ ଯାଏ, ତତ୍‌କ୍ଷଣାତ୍ ଶରୀର ଲାଭ କରେ ନା କିଛି ସମୟ ଧରି ସେ କେଉଁଠି ରହେ ଏସବୁ ପ୍ରଶ୍ନ ଅସଂଗତ । ସତ୍ୟର ଅନ୍ୱେଷଣ କରୁଥିବା ସାଧକର କେବେହେଲେ ସେହିଭଳି ପ୍ରଶ୍ନ କରିବା ଉଚିତ ନୁହେଁ, କିମ୍ବା ସେହିଭଳି କଥାକୁ ମନରେ ମହତ୍ତ୍ୱ ଦେବା ଉଚିତ ନୁହେଁ ।

**ପ୍ରଶ୍ନ ୭୮– ସବୁ ଜଗତ ବ୍ରହ୍ମରୂପ ବୋଲି କେମିତି ଜାଣିବା ?**

ଉତ୍ତର– ଯଦି ତୁମ ପାଖରେ ଜ୍ଞାନଦୃଷ୍ଟି ଅଛି ତେବେ ତୁମେ ସାରା ଜଗତକୁ ବ୍ରହ୍ମ ଭାବରେ ଜାଣିପାରିବ ।

**'ଦୃଷ୍ଟି ଜ୍ଞାନମୟୀ କୃତ୍ୱା ପଶ୍ୟେଦ୍ ବ୍ରହ୍ମମୟଂ ଜଗତ୍'**

**ପ୍ରଶ୍ନ ୭୯– ବ୍ୟାକୁଳତା କ'ଣ ?**

ଉତ୍ତର– ତୁମେ ନିଜ ଆତ୍ମାକୁ ଭୁଲିଯାଇ ବାହ୍ୟ ବିଷୟ ଜଗତପ୍ରତି ସୁଖ ବୁଦ୍ଧି କରିନେଇଛ । ଯଦି ତୁମେ ଦୃଢ଼ତାପୂର୍ବକ ଆତ୍ମଭାବରେ ସ୍ଥିର ହୋଇଯିବ, ତେବେ ତୁମପାଇଁ ବାହ୍ୟଜଗତ ଭାସମାନ ହିଁ ହେବନାହିଁ ।

**ପ୍ରଶ୍ନ ୮୦– ବାଳକ ଏବଂ ଜ୍ଞାନୀକୁ ସମାନ ବୋଲି କାହିଁକି କୁହାଯାଏ ?**

ଉତ୍ତର– ବାଳକର ବାହ୍ୟଜଗତର ଘଟଣାବଳୀ ସହିତ ସେତେପର୍ଯ୍ୟନ୍ତ ସମ୍ବନ୍ଧ ରହେ ଯେପର୍ଯ୍ୟନ୍ତ ଘଟଣା ଘଟିଚାଲିଛି । ଘଟଣା ଶେଷ ହୋଇଗଲାପରେ ସେ କିଛି

ବିଚାର କରେ ନାହିଁ । ଜ୍ଞାନୀଙ୍କର ବି ସେମିତି ହୋଇଥାଏ । ଘଟଣା ଘଟିଗଲା ପରେ ଜ୍ଞାନୀ ସେଥିରେ ପ୍ରଭାବିତ ହୁଅନ୍ତି ନାହିଁ ।

ଜ୍ଞାନୀଙ୍କ ସଂଗଲାଭ କଲେ ମନ ସ୍ୱତଃ ଶାନ୍ତ ହୋଇଯାଏ । ପ୍ରାଣାୟାମ ଦ୍ୱାରା ବି ମନ ଶାନ୍ତ ହୋଇଯାଏ ।

**ପ୍ରଶ୍ନ ୮୧– ଆତ୍ମ ସାକ୍ଷାତ୍‌କାର ପାଇଁ ମୁଖ୍ୟସାଧନ କ'ଣ ?**

**ଉତ୍ତର–** ବେଦାନ୍ତ ଶ୍ରବଣ, ମନନ ଇତ୍ୟାଦି ସାଧନ ତ ଅଛି କିନ୍ତୁ ମୁଖ୍ୟ ସାଧନ ହେଉଛି ଗୁରୁକୃପା ।

**ପ୍ରଶ୍ନ ୮୨– ମୋର ଆତ୍ମସାକ୍ଷାତ୍‌କାର ହୋଇପାରୁ ନାହିଁ କାହିଁକି ?**

**ଉତ୍ତର–** ଏହି ବିଚାର ହିଁ ସାକ୍ଷାତ୍‌କାରର ବାଧକ । ତୁମେ ନିଜେ ହିଁ ସାକ୍ଷାତ୍ ଆତ୍ମା ।

**ପ୍ରଶ୍ନ ୮୩– "ମୁଁ କିଏ ?" ଏହାର ଅନୁଭୂତି କେମିତି ପ୍ରାପ୍ତ ହୋଇଯିବ ?**

**ଉତ୍ତର –** ଶରୀରର କ୍ରିୟାକୁ ତୁମେ ଜାଣିଛ, ସେଥିପାଇଁ ତୁମେ ଶରୀର ନୁହଁ । ମନର ଅବସ୍ଥାକୁ ତୁମେ ଜାଣିଛ, ସେଥିପାଇଁ ତୁମେ ମନ ନୁହଁ । ମନର ସଂକଳ୍ପ କେଉଁଠୁ ଉଦୟ ହେଉଛି ? ଏହି ସଂକଳ୍ପ ବୁଦ୍ଧିରୁ ଉତ୍ପନ୍ନ ହେଉଛି । ପୁଣି ସେହି ବୁଦ୍ଧିର ସାକ୍ଷୀ କିଏ ? ତାପରେ ଏହା ସ୍ପଷ୍ଟ ହୋଇଯିବ ଯେ ଶରୀର, ପ୍ରାଣ, ଇନ୍ଦ୍ରିୟ, ମନ, ବୁଦ୍ଧି ତଥା ସେମାନଙ୍କ ସଂକଳ୍ପଗୁଡ଼ିକର ଦ୍ରଷ୍ଟା ଭାବରେ ମୁଁ ହେଉଛି ସାକ୍ଷୀ ଆତ୍ମା । ଏହି ବ୍ୟକ୍ତିତ୍ୱ ହିଁ ଅହଂ, ଯାହାକୁ ଲୋକେ ମୁଁ ବୋଲି କହିଥାନ୍ତି । ସ୍ୱୟଂ "ମୁଁ ନୁହେଁ ।"

ଏହି ମୁଁ କିଏ ? ଏହାର ଆଗମନ କେଉଁଠୁ ହେଉଛି । ସୁଷୁପ୍ତିରେ 'ମୁଁ'ର ଆଭାସ ନଥିଲା । ଏହି ମୁଁ ଜାଗ୍ରତରେ ଉଦୟ ହେଲା । ଏହି ମୁଁ ହେଉଛି ଅହଂ ତତ୍ତ୍ୱ । କିନ୍ତୁ ମୁଁ ତିନି ଅବସ୍ଥା, ପଞ୍ଚକୋଷର ଉପରେ । ଏହା ହେଉଛି ପ୍ରକୃତ ନିତ୍ୟ ମୁଁ । ସମସ୍ତ ଅନାତ୍ମ ଦେହ-ସଂଘାତର ଅଧ୍ୟାସକୁ ତ୍ୟାଗ କଲାପରେ ଯେ ନେତି-ନେତିର ସାକ୍ଷୀ, ସେଇ ସତ୍-ଚିତ୍-ଆନନ୍ଦ ଆତ୍ମା ହିଁ ହେଉଛି ମୁଁ ।

ମନ ଉତ୍ପତ୍ତିର ଅନୁସନ୍ଧାନ କରୁ କରୁ ମନ ଲୋପ ହୋଇଯାଏ । ତା'ପରେ କେବଳ 'ମୁଁ' ହିଁ ଶେଷରେ ରହିଯାଏ । ତା'ପରେ ପ୍ରଶ୍ନ ଉଠେ ମୁଁ କିଏ ? ମୁଁ ଆତ୍ମା । ଏହା ମନନ । ଏହି ପ୍ରକ୍ରିୟା ଦ୍ୱାରା ଦେହ ଭାବ ନଷ୍ଟ ହୋଇଯାଏ, ଅହଂକାର ଲୋପ ହୋଇଯାଏ । କେବଳ ଆତ୍ମା ପ୍ରକାଶିତ ହୋଇଥାଏ ।

ମନକୁ ଲୟ କରିବାର ସରଳ ଉପାୟ ହେଉଛି ସତ୍‌ପୁରୁଷଙ୍କ ସଙ୍ଗ । ସେମାନଙ୍କର ସାକ୍ଷାତ୍‌କାର ସହଜ ଏବଂ ସର୍ବଦା ହୁଏ, ଯେ ତାଙ୍କ ସଂଗରେ ରହନ୍ତି । ସେମାନେ

ବିନା ଚେଷ୍ଟାରେ ତାଙ୍କ କୃପାରେ ଆତ୍ମାନୁଭୂତି କରିନିଅନ୍ତି । ଦେହଭାବ ସହିତ ଯୋଡ଼ି ହୋଇ ରହିବା ହିଁ ଦ୍ୱୈତ ଏବଂ ଆତ୍ମଭାବରେ ଦୃଢ଼ ହୋଇଯିବା ହିଁ ଅଦ୍ୱୈତ ।

**ପ୍ରଶ୍ନ ୮୪– 'ବ୍ରହ୍ମସତ୍ୟ ଜଗତ୍ ମିଥ୍ୟା' ପୁଣି କହନ୍ତି ''ସର୍ବ ଖଲ୍ୱିଦଂ ବ୍ରହ୍ମ'' କେଉଁଟା ସତ୍ୟ ।**

**ଉତ୍ତର–** ପ୍ରଥମେ ମୁଖ୍ୟ ଆତ୍ମାଆଡ଼କୁ ସାଧକର ଦୃଷ୍ଟିକୁ ଟାଣିନେବା ପାଇଁ ଏହା କହିବାକୁ ପଡ଼ିଥାଏ ଯେ, ଯାହା ଦୃଶ୍ୟ, ସେସବୁ ପରିବର୍ତ୍ତନଶୀଳ ହୋଇଥିବାରୁ ନାଶବାନ୍ । ସତ୍ୟ ହେଉଛି ସଦାବେଳେ ରହୁଥିବା ଅସ୍ତିତ୍ୱର ନାମ । ଶେଷ ପର୍ଯ୍ୟନ୍ତ ଯାଇ ସାଧକ 'ଏହା ନୁହେଁ','ଏହା ନୁହେଁ', ବିଚାର କରି କରି ଆତ୍ମା ପର୍ଯ୍ୟନ୍ତ ଯେତେବେଳେ ପହଞ୍ଚିଯାନ୍ତି, ଯାହାର ପ୍ରମୁଖ ସ୍ୱଭାବ ହେଉଛି ବ୍ୟାପକ ଏକତ୍ୱ ସର୍ବରୂପ । ସେତେବେଳେ ପ୍ରଥମେ ଯାହାକୁ ଅସତ୍ୟ କହି ଛାଡ଼ି ଦେଇଥିଲ ସେ ସବୁ ହେଉଛି ଆତ୍ମାର ବଦଳୁଥିବା ଅଂଗ । ସତ୍ୟରେ ସମାହିତ ହେଲେ ଜଗତ ବି ସତ୍ୟ । ଆତ୍ମ ସାକ୍ଷାତ୍କାରରେ କେବଳ ଆତ୍ମା ହିଁ ରହିଥାଏ, ପୁଣି ନାଁ କହିବାକୁ କୌଣସି ଦୃଶ୍ୟ ଜଗତ ରହେନାହିଁ । ନଚେତ୍ ଅଦ୍ୱୈତର ସିଦ୍ଧି ନ ହୋଇ ଦ୍ୱୈତ ହିଁ ସିଦ୍ଧ ହୋଇଯିବ । 'ନା, ଇଦଂ' କହିବାକୁ କିଛି ରହେନାହିଁ ।

**ପ୍ରଶ୍ନ ୮୫– କ'ଣ ଦେହ ଅନ୍ତର୍ଦ୍ଧାନ ହୋଇପାରିବ ?**

**ଉତ୍ତର–** ଏହା କେବଳ ଶାରୀରିକ ବିଷୟ । ଆମର ବାସ୍ତବ ହିତ କ'ଣ ଏହି କଥାରେ ଅଛି ? ତୁମେ ବର୍ତ୍ତମାନ କ'ଣ ଦେହରହିତ ଆତ୍ମା ନୁହଁ ? ସୁଷୁପ୍ତି ଅବସ୍ଥାରେ ତୁମ ପାଖରେ ଦେହ କେଉଁଠି ଥିଲା ? ଅଯଥା କଥା ଚିନ୍ତା କରନାହିଁ । ସାରକଥା ଗ୍ରହଣ କର । ପାଣ୍ଡିତ୍ୟପୂର୍ଣ୍ଣ ସିଦ୍ଧାନ୍ତ, ସିଦ୍ଧିଗୁଡ଼ିକୁ ବ୍ୟର୍ଥ, ଦୁଃଖଦାୟକ, ଅସାର ବୋଲି ଜାଣି ଛାଡ଼ିଦିଅ । ଯେଉଁମାନେ ଶରୀର ଲୋପ ହୋଇଯିବାକୁ ମୁକ୍ତି ବୋଲି ମାନିନେଇ ବସିଛନ୍ତି ସେମାନେ ଭ୍ରମରେ ପଡ଼ିଛନ୍ତି । ତୁମେ ଦେହ ନୁହଁ – ଏହା କ'ଣ ଗୋଟିଏ ପ୍ରକାରର ବିଚାର ଦ୍ୱାରା ଦେହ–ଲୋପ ନୁହେଁ ? ବର୍ତ୍ତମାନ ଆଉ କେହି ଅନ୍ୟ ପ୍ରକାରର ଲୋପ କରୁଥାଉ ଏଥିରେ କ'ଣ ଫରକ ପଡୁଛି । ସେହି କଥାର କୌଣସି ମହତ୍ତ୍ୱ ନାହିଁ । ଦେହ ଅଭିମାନକୁ ନାଶ କରିବା ହିଁ ମୁଖ୍ୟବସ୍ତୁ, ଦେହତ୍ୟାଗ ବା ଦେହକୁ ଲୋପ କରିବା ମହତ୍ତ୍ୱପୂର୍ଣ୍ଣ ନୁହେଁ । ଆତ୍ମାର ଦେହ ସହିତ ଏକତ୍ୱ ମାନିନେବା ହିଁ ବନ୍ଧନ । ନିଜକୁ ଦେହଠାରୁ ଭିନ୍ନ ଆତ୍ମା ବୋଲି ଜାଣ । ତୁମେ ଦେହ ନୁହେଁ, ବାସ୍ ଏତିକି ଜାଣିନିଅ, ଏହା ଦ୍ୱାରା ଦେହ ଲୋପ ହୋଇଗଲା । ଯାହା ସମ୍ଭବ ତାକୁ ଗ୍ରହଣ କର । ଯାହା ତୁମ ପାଇଁ ସମ୍ଭବ ନୁହେଁ ତାହା ସମ୍ବନ୍ଧରେ ବିଚାର କରି କାହିଁକି ଦୁଃଖୀ ହେଉଛ ?

**ପ୍ରଶ୍ନ ୮୬– ପୁନର୍ଜନ୍ମକୁ କିପରି ବଞ୍ଚାଯାଇପାରିବ ?**

**ଉତ୍ତର–** ଏହା ଚିନ୍ତାକର ଜନ୍ମ କାହାର ହୁଏ ? ତଥା ବର୍ତ୍ତମାନ ଜୀବନରେ ଦୁଃଖ କିଏ ଭୋଗ କରୁଛି ? ସୁଷୁପ୍ତି ଅବସ୍ଥାରେ ଯେତେବେଳେ ତୁମେ ଥାଅ ସେତେବେଳେ ସେଇଠି ପୁନର୍ଜନ୍ମ ଅଥବା ବର୍ତ୍ତମାନ ଜୀବନର ବିଚାର ଆସେ ? ତେଣୁ ବର୍ତ୍ତମାନ ସମସ୍ୟାର ମୂଳକୁ ଖୋଜ । ତୁମକୁ ସ୍ପଷ୍ଟ ହୋଇଯିବ ଯେ, ନା ଜନ୍ମ ଅଛି ନା ବର୍ତ୍ତମାନ ଶରୀର, ନା ଦୁଃଖ, କେବଳ ଆତ୍ମା ହିଁ ଅଛି, ସେ' ହିଁ ତୁମେ । ତୁମେ ହେଉଛ ପରମାନନ୍ଦ –ଏହି ବିଚାର ଦ୍ୱାରା ହିଁ ପୁନର୍ଜନ୍ମ ସମାପ୍ତ ହୋଇଯାଏ ।

**ପ୍ରଶ୍ନ ୮୭– ଭକ୍ତିମାର୍ଗ ଏବଂ ଜ୍ଞାନମାର୍ଗ ମଧ୍ୟରେ ପ୍ରଭେଦ କ'ଣ ?**

**ଉତ୍ତର–** ଉଭୟରେ ବ୍ୟକ୍ତିର ଦେହଭାବ ଲୋପ ହୋଇଯାଏ । ଜ୍ଞାନୀ ଆତ୍ମା ବିଚାର ଦ୍ୱାରା, ଭକ୍ତ ନିଜର ଇଷ୍ଟଙ୍କଠାରେ ସମର୍ପଣ ଭାବ ରଖି ଆତ୍ମ ସାକ୍ଷାତ୍କାର କରିନେଇଥାନ୍ତି । ଆତ୍ମ ସମର୍ପଣର ଅର୍ଥ ହେଉଛି ମୁଁ (ଦେହଭାବ) ର ପୂର୍ଣ୍ଣ ଭାବରେ ଲୋପ କରିବା । ଯେମିତି ହନୁମାନ ଦାସୋଽହମ୍ ଦ୍ୱାରା ସୋଽହମ୍ ଭାବ ପ୍ରାପ୍ତ କରିଥିଲେ ।

**ପ୍ରଶ୍ନ ୮୮– ପୂଜା କ'ଣ ?**

**ଉତ୍ତର–** ନିଜର ବ୍ୟକ୍ତିତ୍ୱକୁ ଇଷ୍ଟଙ୍କଠାରେ ହଜେଇଦେବା ହିଁ ପୂଜା ।

**ପ୍ରଶ୍ନ ୮୯– କ'ଣ ଯୋଗ ଏବଂ ଉପାସନାର ଆବଶ୍ୟକତା ନାହିଁ ?**

**ଉତ୍ତର–** କେବଳ ମନକୁ ଏକାଗ୍ର କରିବା ବ୍ୟତୀତ ଯୋଗ, ଭକ୍ତି ଆଉ କ'ଣ ? ଏକାଗ୍ରତା କୌଣସି ଉପାୟରେ ହୋଇପାରେ । କୌଣସି ଗୋଟିଏ ଉପରେ ଦୃଢ଼ ହୋଇଯାଅ ଚଞ୍ଚଳତା ଶାନ୍ତ ହୋଇଯିବ, ଆତ୍ମବିଚାର ଜାଗ୍ରତ ହୋଇଯିବ ।

ଯେତେବେଳେ ଦେହଭାବ ଚାଲିଯିବ ତା'ପରେ ମୂର୍ତ୍ତିପୂଜା କରିବା ଉଚିତ୍ ନୁହେଁ । ଦେହଭାବ ଅଛି ତ ମୂର୍ତ୍ତିପୂଜା କରିବା ଦୋଷ ନୁହେଁ । କିନ୍ତୁ ବିନା ଦେହଭାବକୁ ଛାଡ଼ି, ପୂଜା ମାଧ୍ୟମରେ ମୁକ୍ତି ହେବନାହିଁ । ଦେହଭାବର ନିବୃତ୍ତି କେବଳ ଆତ୍ମଜ୍ଞାନ ଦ୍ୱାରା ହେବ ।

**ପ୍ରଶ୍ନ ୯୦– ଆତ୍ମାର ଚିନ୍ତନ କେମିତି କରିବି ?**

**ଉତ୍ତର–** ଆତ୍ମାର ଆଲୋକରେ ହିଁ ଜୀବ ଅନ୍ଧକାର ଏବଂ ଆଲୋକର ଅନୁଭବ କରିଥାଏ । ଆତ୍ମା ହିଁ ଜୀବକୁ ଉଭୟର ଅନୁଭବ କରିବା ପାଇଁ ଜ୍ଞାନ ପ୍ରଦାନ କରିଥାନ୍ତି ।

**ପ୍ରଶ୍ନ ୯୧– କ'ଣ ଏମିତି ଅନୁଭବ ହେବ ଯେ ମୁଁ ଶରୀର ନୁହେଁ । ନା ମୁଁ କର୍ତ୍ତା ନା ଭୋକ୍ତା ?**

ଉତ୍ତର– ମୁଁ କ'ଣ ମଣିଷ ଏମିତି ବିଚାର ଆମେ କେବେ କରିଥାଉ ? ଏହା କ'ଣ କେବେ ଭୁଲିଯାଉ ? ନାଁ । ବାସ୍, ସେହିପରି ଥରେ ବୁଦ୍ଧିରେ ଏଇ ନିଷ୍ଠା ସୃଷ୍ଟି କରିନିଅ ଯେ ମୁଁ ହିଁ ଆତ୍ମା । ମୁଁ କ'ଣ ମଣିଷ– ଏହି ବିଚାର ନକଲେ ମୁଁ ମନୁଷ୍ୟ ଶରୀରଧାରୀ ହୋଇ ରହେନାହିଁ ବଦଳିଯାଇ ଆଉ କିଛି ହୋଇଯାଉଛି । ବାସ୍, ମୁଁ ଆତ୍ମା– ଏହି ବିଚାର ନକଲେ ମୁଁ ଆତ୍ମାରୁ ବଦଳିଯାଇ ଅନାତ୍ମା ହୋଇଯାଉନାହିଁ ।

ଆତ୍ମ ସାକ୍ଷାତକାର ସହିତ ସମସ୍ତ ସଂକଳ୍ପ ସମାପ୍ତ ହୋଇଯାଏ । ସଂକଳ୍ପ ହେଉଛି ଅନ୍ତଃକରଣର ଅବସ୍ଥା ଏବଂ ମୁଁ ହେଉଛି ତା'ଠାରୁ ଭିନ୍ନ ସାକ୍ଷୀ–ଏହା ହିଁ ଆତ୍ମ ସାକ୍ଷାତ୍କାର ।

**ପ୍ରଶ୍ନ ୯୨–ଜ୍ଞାନୀ କ'ଣ ଦେହକୁ ଲୋପ କରିପାରେ ?**

ଉତ୍ତର – ଏହା ସହିତ ଜ୍ଞାନର କୌଣସି ସମ୍ବନ୍ଧ ନାହିଁ ବରଂ ଏହା ପ୍ରତିବନ୍ଧକ । ବଶିଷ୍ଠ, ବାଲ୍ମିକୀଙ୍କର ଏହିଭଳି ପ୍ରାରବ୍ଧ ଥିଲା ଯେ ସେମାନଙ୍କର ଜ୍ଞାନ ସହିତ ସିଦ୍ଧିଗୁଡିକ ବି ବିକଶିତ ହୋଇଯାଇଥିଲା । ତୁମେ ସେଭଳି ବସ୍ତୁର କାମନା କାହିଁକି କରୁଛ, ଯାହା ଆବଶ୍ୟକ ନୁହେଁ, ବରଂ ତାହା ସାଧକର ଲକ୍ଷ୍ୟପ୍ରାପ୍ତି ପାଇଁ ପ୍ରତିବନ୍ଧକ । ଦେହ ଦେଖା ପଡୁଥିଲେ ବା ଅଦୃଶ୍ୟ ହୋଇ ଯାଉଥିଲେ ଜ୍ଞାନୀକୁ ନା କୌଣସି କଷ୍ଟ ହୁଏ ନା ସୁଖ ହୁଏ । ହିପ୍ନୋଟିଜମର ଜ୍ଞାତା ନିଜକୁ ଅଦୃଶ୍ୟ କରିପାରେ । କ'ଣ ଏହିଥିରୁ ତାଙ୍କୁ ଜ୍ଞାନୀ ବୋଲି ବୁଝାଯାଇପାରିବ ? ଦୃଶ୍ୟ ତଥା ଅଦୃଶ୍ୟର ସମ୍ବନ୍ଧ ଦ୍ରଷ୍ଟା ପାଖରେ ରହିଛି । ସେହି ଦ୍ରଷ୍ଟା ତୁମେ ସଦାବେଳେ ଏକରସ ରେ ଅଛ ଅନ୍ୟ କୌଣସି ଅଯଥା କଥା ଉପରେ ମହତ୍ତ୍ୱ ଦିଅନାହିଁ ।

ସୃଷ୍ଟି କେବେ କିପରି ହେଲା ସେହି ବିବାଦ ଭିତରେ ପଶନାହିଁ । ବେଦ ଶାସ୍ତ୍ର ଆମକୁ ଅବିନାଶୀ ଆତ୍ମା ହେବାପାଇଁ ''ତତ୍ତ୍ୱମସି'' ମହାବାକ୍ୟ ମାଧ୍ୟମରେ ଜ୍ଞାନ ଦେଇଛନ୍ତି । ଆମେ ସେହି ଆତ୍ମା ।

ଯଦି ମନ ଉଦୟ ହେବାର ମୂଳ କାରଣ ଖୋଜାଯିବ, ଏହା ଜଣାପଡ଼ିବ ଯେ, ସେ ସୂକ୍ଷ୍ମ, ସତ୍ୟରୁ ହିଁ ଉଦୟ ହୋଇଛି, ଯାହାକୁ ଆତ୍ମା ବା ବ୍ରହ୍ମ କୁହାଯାଏ । ଏଣୁ ମନ, ମୋ'ଠାରେ ଦଉଡ଼ିରେ ସର୍ପ ଭଳି କଳ୍ପିତ ହୋଇଛି ।

**ପ୍ରଶ୍ନ ୯୩– କର୍ମ କରିବା ଉଚିତ ନା ନୁହେଁ ?**

ଉତ୍ତର – ଏହି ବିବାଦ ଭିତରେ ମୋଟେ ପଡ଼ନାହିଁ । ନିଜେ ନିଜକୁ ଜାଣିନିଅ । ତେବେ ଦେଖ କର୍ମ କାହାର ? କର୍ମ ହେବାକୁ ଦିଅ । ଯେପର୍ଯ୍ୟନ୍ତ କର୍ତ୍ତାପଣିଆର ଭାବ ରହିଛି କର୍ମର ଫଳ ଅବଶ୍ୟ ଭୋଗ କରିବାକୁ ପଡ଼ିବ । ଯଦି ଜଣେ ନିଜକୁ କର୍ତ୍ତା ବୋଲି ମାନୁନାହିଁ, ତେବେ ତାଙ୍କ ପାଇଁ କୌଣସି କର୍ମ ରହେ ନାହିଁ । ଶ୍ରୀ

ଶଙ୍କରାଚାର୍ଯ୍ୟ ଅକର୍ମର ଆଦେଶ ଦେଇଥିଲେ । କିନ୍ତୁ ସେ କ'ଣ ଶାସ୍ତ୍ରାର୍ଥ କରିନଥିଲେ, ଗ୍ରନ୍ଥ ଲେଖିନଥିଲେ ? ଆତ୍ମଜ୍ଞାନୀ ହିଁ ଉତ୍ତମ କର୍ମଯୋଗୀ ହୋଇପାରେ । କର୍ମର ଫଳ ଯଦି ବ୍ୟକ୍ତିକୁ ପ୍ରଭାବିତ କରୁନାହିଁ, ତେବେ ସେ କର୍ମରୁ ମୁକ୍ତ । କର୍ମକୁ ତ୍ୟାଗ କରନାହିଁ । ତୁମେ ଗୋଟିଏ ମୁହୂର୍ତ୍ତ ପାଇଁ ବି କର୍ମତ୍ୟାଗ କରିପାରିବ ନାହିଁ । କର୍ତ୍ତାପଣିଆର ଭାବକୁ ତ୍ୟାଗ କର । କର୍ମ ସ୍ୱତଃ ହୋଇ ଚାଲିଥିବ ଅଥବା କର୍ମ ତୁମ ଠାରୁ ଚାଲିଯିବ । ଯଦି ପ୍ରାରବ୍ଧ ନିବୃତ୍ତି-ପ୍ରଧାନ ହୋଇଥାଏ ଶୁକଦେବଙ୍କ ଭଳି, ତେବେ କର୍ମ ସ୍ୱତଃ ଚାଲିଯିବ, ଯଦି ପ୍ରାରବ୍ଧ ପ୍ରବୃତ୍ତି-ପ୍ରଧାନ ହୋଇଥାଏ ରାଜା ଜନକଙ୍କ ଭଳି, ତେବେ କର୍ମ ହୋଇଚାଲିବ । ପ୍ରାରବ୍ଧ ଆଗରେ କାହାର ହଟ ଚାଲିବ ନାହିଁ ଯେ ଏମିତି କରିବି, ଏମିତି କରିବି ନାହିଁ । ଜନକ, ବଶିଷ୍ଠ ଅହଂକାର ରହିତ ହୋଇ କର୍ମ କରୁଥିବାର ଜଣାଯାଏ । ଲୋକବାସନା ପାଇଁ, ଯଶଲାଭ ପାଇଁ ବି କର୍ମ କରାଯାଇପାରେ । ସମସ୍ତଙ୍କର ପ୍ରାରବ୍ଧ ଭିନ୍ନ ଭିନ୍ନ । ସବୁ ଜ୍ଞାନୀ-ଅଜ୍ଞାନ ଯେ ଗୋଟିଏ ପ୍ରକାରର କର୍ମ କରିବେ ଏହଭଳି କଳ୍ପନା କରନାହିଁ ।

**ପ୍ରଶ୍ନ ୯୪- ବିନା ଗୁରୁରେ କ'ଣ କଲ୍ୟାଣ ହୋଇପାରିବ ?**

**ଉତ୍ତର –** ଏହି କଥା ଗୁରୁଙ୍କ ଦ୍ୱାରା ହିଁ ଜଣାଯାଇପାରିବ । ଆତ୍ମା ସାକ୍ଷାତ୍କାର ପରେ ଯାଇ ଏହା ଜଣାପଡ଼େ ଯେ ବିନା ଗୁରୁରେ ବି ମୁଁ ଆତ୍ମସ୍ୱରୂପ ହିଁ ଥିଲି, ଅଛି ଏବଂ ରହିବି କିନ୍ତୁ ଏହା ଗୁରୁ ଦ୍ୱାରା ହିଁ ଶୁଦ୍ଧ ହୋଇଥାଏ, ପ୍ରଥମେ ନୁହେଁ ।

**ବନ୍ଧୁର୍ନ ମିତ୍ରଂ ଗୁରୁ ନୈବ ଶିଷ୍ୟ**
**ଚିଦାନନ୍ଦ ରୂପ ଶିବୋଽହଂ ଶିବୋଽହଂ ।।**

**ପ୍ରଶ୍ନ ୯୫- ଆତ୍ମା ପର୍ଯ୍ୟନ୍ତ ପହଞ୍ଚିବା ପାଇଁ କ'ଣ କରିବାକୁ ହେବ ?**

ଉତ୍ତର – ମୁଁ ହେଉଛି ଶରୀର- ଏହି ଭାବକୁ ସଦ୍‌ଗୁରୁଙ୍କ ଉପଦେଶ, ସତ୍‌ସଙ୍ଗ, ବେଦାନ୍ତ ଶ୍ରବଣ, ମନନ ଦ୍ୱାରା ନଷ୍ଟ କରିଦେବାକୁ ହେବ । ତୁମକୁ ଆତ୍ମା ପର୍ଯ୍ୟନ୍ତ ପହଞ୍ଚିବାକୁ ପଡ଼େନାହିଁ, ତୁମେ ନିଜେ ହେଉଛ ଆତ୍ମା । ବରଫକୁ ଜଳ ପର୍ଯ୍ୟନ୍ତ ପହଞ୍ଚିବାକୁ ପଡ଼େ ନାହିଁ, ବରଫର ନିଜ ଦେହାଭିମାନକୁ କେବଳ ନଷ୍ଟ କରିବାକୁ ହେବ । ତା'ପରେ ବରଫ ନିଜକୁ ଜଳ ରୂପରେ ପାଇବ । କ'ଣ ଏମିତି କୌଣସି ମୁହୂର୍ତ୍ତ ଅଛି, ଯେତେବେଳେ ତୁମେ ଆତ୍ମା ନୁହଁ ? ତୁମେ ସଦାବେଳେ ଆତ୍ମା କିନ୍ତୁ ସେହି ଆଡ଼କୁ ନଜର ନାହିଁ, ଦେହ ସାଙ୍ଗରେ ମିଶି ଆତ୍ମାକୁ ଅନ୍ୟ ବୋଲି ମାନି ପାଇବା, ପହଞ୍ଚିବା, ଜାଣିବାର ଭ୍ରାନ୍ତି ଉଦୟ ହୋଇଯାଇଛି । ଏହା ନୂଆ ବସ୍ତୁ ପାଇବା ଭଳି ନୁହେଁ, ତୁମେ ହିଁ ତ ଆତ୍ମା । ଯାହା ସାଧନ ଦ୍ୱାରା ଆଜି ପ୍ରାପ୍ତ ହେବ, ଯାହା

ସାଧନ ପୂର୍ବରୁ ନଥିଲା, ସେ ସମୟ ପାଇଲେ ବି ନଷ୍ଟ ହୋଇଯିବ । ତୁମେ ଆତ୍ମାତ ନିତ୍ୟ । ଯାହା ସତ୍ୟ, ତାହା ସନାତନ । ଯାହା ନୂଆ, ତାହା ସ୍ଥାୟୀ ନୁହେଁ ।

**ପ୍ରଶ୍ନ ୯୬– ଯାହାକୁ ଜାଣିଲେ ସମସ୍ତ ସଂଶୟ ନିବୃତ୍ତ ହୋଇଯାଏ, ତାହା କେଉଁ ପ୍ରକାର ବସ୍ତୁ ?**

**ଉତ୍ତର** – ସଂଶୟ କରୁଥିବା କର୍ତ୍ତାକୁ ଜାଣିନିଅ । ଯଦି ସଂଶୟର କର୍ତ୍ତା ଧରାପଡ଼ି ଯାଏ, ତେବେ ସଂଶୟ ଉତ୍ପନ୍ନ ହେବ ନାହିଁ । ଏଇଠି ସଂଶୟ କର୍ତ୍ତା ହେଉଛି ମନ । ଆମକୁ ମନ ସେପାରିରେ ଥିବା ସାକ୍ଷୀ ଉପରେ ସ୍ଥିର ହେବାକୁ ପଡ଼ିବ । ସଂଶୟ, ବୃତ୍ତି ଏବଂ ତାହାର କର୍ତ୍ତା ମନରେ ଅଟକି ରହେ ନାହିଁ । ଯେତେବେଳେ ସାକ୍ଷୀ ଭାବରେ ସ୍ଥିତ ହୋଇଯିବ, ସେଇଠି ସଂଶୟର କର୍ତ୍ତା ହିଁ ରହିବ ନାହିଁ । ତେବେ ସଂଶୟ ଆଉ କାହା ଦ୍ୱାରା ଉତ୍ପନ୍ନ ହେବ ? ସବୁ ମନୁଷ୍ୟ ଜ୍ଞାନୀ ଅର୍ଥାତ୍ ଆତ୍ମା ଏବଂ ଜୀବନ୍ମୁକ୍ତ । ସେମାନଙ୍କର ଏଇ ବାସ୍ତବତା ସମ୍ବନ୍ଧରେ ବୋଧନାହିଁ । ସଂଶୟଗୁଡ଼ିକୁ ନିର୍ମୂଳ କରିବାକୁ ହେବ, ଏହାର ଅର୍ଥ ହେଉଛି ସଂଶୟ-କର୍ତ୍ତା ମନର ସତ୍ତାକୁ, ବୁଦ୍ଧି ଦ୍ୱାରା ହିଁ ନିର୍ମୂଳ କରିବାକୁ ପଡ଼ିବ । ଏକମାତ୍ର ଆତ୍ମା ବ୍ୟତୀତ ଅନ୍ୟ କିଛି ହେଲେ ନାହିଁ । 'ମୁଁ କିଏ' ଏହାର ଅନ୍ୱେଷଣ କଲେ ମନ ରହିବ ନାହିଁ । ସଂକଳ୍ପ ସମାପ୍ତ ହୋଇଯିବ । ସେତେବେଳେ ଯେ ଅନିବାର୍ଯ୍ୟ ଅବଶେଷ ଆତ୍ମା, ସେ ପ୍ରକଟ ହୋଇଯିବେ ।

**ପ୍ରଶ୍ନ ୯୭– ସଂକଳ୍ପର ଉପରେ ଯେଉଁ ଚୈତନ୍ୟ ଅଛି, ତାହାର ଅନୁଭବ କ'ଣ ସମ୍ଭବ ?**

ଉତ୍ତର – ହଁ । ଚୈତନ ହିଁ କେବଳ ଗୋଟିଏ, ଯେ ଜାଗ୍ରତ, ସ୍ୱପ୍ନ ତଥା ସୁଷୁପ୍ତି ଏଇ ତିନୋଟି ଅବସ୍ଥାରେ ଏକରସ ରହିଥାନ୍ତି । ସୁଷୁପ୍ତି ଅବସ୍ଥାରେ ଯେ ଚୈତନ୍ୟରେ ଅଛି, ତାହା ବାସ୍ତବରେ 'ମୁଁ' । ଜାଗ୍ରତ ତଥା ସ୍ୱପ୍ନ ଶେଷ ହେଲାଯାଏ ମିଥ୍ୟା 'ମୁଁ'ର ଉପସ୍ଥିତି ତିଷ୍ଠି ରହିଥାଏ । ସେତେବେଳେ ସ୍ଥୂଳ, ସୂକ୍ଷ୍ମ ସଂସାର ଭୋଗ ହୋଇଥାଏ । ସୁଷୁପ୍ତି ଅବସ୍ଥାରେ ସିଏ ଲୋପ ହୋଇଯାଏ । ସୁଷୁପ୍ତି ଅବସ୍ଥାର 'ମୁଁ' ପ୍ରକୃତ 'ମୁଁ'ର ସଂକଳ୍ପ ମାତ୍ର । ଯେତେବେଳେ କି ସୁଷୁପ୍ତିର 'ମୁଁ' ହିଁ ପ୍ରକୃତ 'ମୁଁ' । ତାହାର ନିରନ୍ତର ସତ୍ତା ରହିଛି । ଏହା ଚୈତନ୍ୟ । ଯଦି ତାହାର ଅନୁଭବ ହୋଇଯାଏ, ଯେ ସବୁ ଅବସ୍ଥା ଗଡ଼ିକର ଯେ ସାକ୍ଷୀ, ସେ' ହିଁ ମୁଁ ଆତ୍ମା । ସାଂସାରିକ ଅନୁଭବ, ଜାଗ୍ରତ ଏବଂ ସ୍ୱପ୍ନରେ ମିଥ୍ୟା 'ମୁଁ' ଦ୍ୱାରା ହୋଇଥାଏ । କ'ଣ ଏମିତି କେହି ଅଛନ୍ତି ଯେ, ନିଜେ ନିଜକୁ ଜାଣନ୍ତି ନାହିଁ, ପ୍ରତ୍ୟେକ ବ୍ୟକ୍ତି ନିଜକୁ ଜାଣେ, ତଥାପି ସୁଦ୍ଧା ସେ ଆତ୍ମା ସମ୍ବନ୍ଧରେ ଅନଭିଜ୍ଞ ।

ଯଦି ମନର ଅନ୍ୱେଷଣ କରାଯାଏ, ତେବେ ଜଣାପଡ଼ିବ ଯେ ମନ ହିଁ ନାହିଁ । ଏହା ମନର ନିୟନ୍ତ୍ରଣ । ଏହାର ବିପରୀତରେ ଯଦି ମନ ସତ୍ତାକୁ ବି ମାନି ନିଆଯାଏ ଏବଂ ତାହାକୁ ନିୟନ୍ତ୍ରିତ କରାଯାଏ, ତେବେ ମନ ହିଁ ମନ ଉପରେ ନିୟନ୍ତ୍ରଣ କର୍ତ୍ତା ହୋଇଯିବ । ଯେମିତି ଚୋର ନିଜେ ସିପାହୀ ହୋଇ ଚୋରକୁ ଧରିବ । ମନର ଅସ୍ତିତ୍ୱ ବି ଠିକ୍ ସେହିଭଳି ।

ଦେହ ତଥା ଆତ୍ମାକୁ ଗୋଟିଏ ବୋଲି ମାନିବା ହିଁ ମନ । ଦେହ ସାଙ୍ଗରେ ମିଶି ଯେଉଁ ମିଥ୍ୟା ଅହଂ ଉଦୟ ହୋଇଛି ସେ' ହିଁ ମିଥ୍ୟା ଦୃଶ୍ୟଗୁଡ଼ିକୁ ରଚନା କରିଥାଏ । ଏହି ସବୁ ଦ୍ରଷ୍ଟା-ଦୃଶ୍ୟ ମିଥ୍ୟା, କେବଳ ସାକ୍ଷୀ ଆତ୍ମା ହେଉଛି ବାସ୍ତବ । ଯଦି ମିଥ୍ୟା ମୁଁ ଭାବ ମରିଯାଏ, ତେବେ ସତ୍ୟର ନିରନ୍ତର ସତ୍ତା ସ୍ପଷ୍ଟ ହେବ, ଯେମିତି ଫିଲ୍ମ ସରିଗଲା ପରେ ପର୍ଦ୍ଦା ଉପରେ ଶୁଦ୍ଧ ଆଲୋକ ଦୃଷ୍ଟିଗୋଚର ହୋଇଥାଏ । ଏମିତି ନୁହେଁ ଯେ ଫିଲ୍ମ ସମୟରେ ଶୁଦ୍ଧ ଆଲୋକ ନାହିଁ, ସେ ନାହିଁ । ସେହିପରି ମାୟା ଯୋଗୁ ଶୁଦ୍ଧ ପରମାତ୍ମା ପ୍ରତୀୟମାନ ହୁଅନ୍ତି ନାହିଁ । କିନ୍ତୁ ଏମିତି ନୁହେଁ ଯେ, ସେ ବର୍ତ୍ତମାନ ଏଇଠି ନାହାନ୍ତି । ସତ୍ୟ, ଶାଶ୍ୱତ ଏବଂ ସଦା ବିଦ୍ୟମାନ । ପ୍ରତ୍ୟେକ ବ୍ୟକ୍ତି ଏହା ଜାଣିଥାଏ ଯେ 'ମୁଁ ଅଛି' – ସେ କିଏ ? ଏବେ ଆଧ୍ୟାତ୍ମିକ ଦୃଷ୍ଟିରୁ ବିଚାର କରିବା 'ମୁଁ କିଏ'? କେବଳ ଆତ୍ମାର ହିଁ ସତ୍ତା ଅଛି । ଏହା ଥିବା ଅଥବା ସେ ଥିବା ହିଁ ମୋ ମନର କଳ୍ପନା । କେବଳ ଆତ୍ମ ଭାବରେ ରହ । ନା ମନକୁ କଷ୍ଟ ଦିଅ, ନା କାହାର ମନ କଥା ଜାଣିବା ପାଇଁ ଇଚ୍ଛା କର । ଦେହର ଅହଂକାର କେବେହେଲେ କରନାହିଁ । ଦେହ ତ ସଂକଳ୍ପଗୁଡ଼ିକର ପରିଣାମ । ପ୍ରାରବ୍ଧ ଶେଷ ହେଲାଯାଏ ଏହି ଖେଳ ଯଥାବିଧି ଚାଲିଥିବ । କିନ୍ତୁ ତୁମେ ସେସବୁ ଶୁଭାଶୁଭ କ୍ରିୟାଗୁଡ଼ିକ ଦ୍ୱାରା ପ୍ରଭାବିତ ହୁଅନାହିଁ । ସୁଷୁପ୍ତି ଅବସ୍ଥାରେ ତୁମର ଦେହ ସହିତ ସମ୍ବନ୍ଧ ନଥିଲା । ସେହିପରି ତୁମେ ସର୍ବଦା ଦେହାତୀତ । "ମୁଁ କର୍ତ୍ତା" – ଏହି ମିଥ୍ୟା ସଂକଳ୍ପକୁ ତ୍ୟାଗ କର ତଥା ମନର କ୍ରିୟାଗୁଡ଼ିକରେ ହସ୍ତକ୍ଷେପ ନ କରି ମନ ଏବଂ ଇନ୍ଦ୍ରିୟମାନଙ୍କୁ ନିଜ ନିଜର କ୍ରିୟା କରିବାକୁ ଦିଅ । କର୍ମଗୁଡ଼ିକୁ କଲେ ବନ୍ଧନ ହୁଏନାହିଁ । ବନ୍ଧନର କାରଣ ହେଉଛି କେବଳ ଏହି ମିଥ୍ୟା ଅହଂକାର ଯେ, "ମୁଁ କର୍ତ୍ତା ।" ସେହି କର୍ତ୍ତୃତ୍ୱାଭିମାନକୁ ତ୍ୟାଗ କର ।

**ପ୍ରଶ୍ନ ୯୮– ଦେହ ଅହଂକାର, କର୍ତ୍ତା ଅହଂକାର ଛାଡିଦେଲେ ବି କାହିଁକି ଆତ୍ମାର ଅନୁଭୂତି ହେଉନାହିଁ ?**

**ଉତ୍ତର –** ସେ କିଏ ଯେ କହୁଛି ଯେ, "ମୁଁ"ର ଅନୁଭୂତି ହୁଏନାହିଁ । କଣ ଗୋଟିଏ "ମୁଁ" ଅଜ୍ଞାନ ଏବଂ ଆଉ ଗୋଟିଏ "ମୁଁ" ଭ୍ରାନ୍ତିଜନକ ? କ'ଣ ଜଣେ ବ୍ୟକ୍ତି

ପାଖରେ ଦୁଇଟା "ମୁଁ" ଅଛି ? ନିଜେ ନିଜକୁ ଏହି ପ୍ରଶ୍ନ କର । ଏହା ତ ମନ, ଯେ କହୁଛି ଆତ୍ମାନୁଭୂତି ହେଉନାହିଁ । ଏହି ମନ ଆସିଲା କେଉଁଠୁ ? ମନର ମୂଳକୁ ଖୋଜ, ଜାଣିନେଲା ପରେ ମନ ମିଥ୍ୟା ଲାଗିବ । ରାଜା ଜନକ କହିଲେ ମୁଁ ଗୁରୁ କୃପାରେ ଆଜି ସେହି ଚୋର(ମନ)କୁ ଧରିପାରିଲି, ଯାହା ପାଇଁ ଏତେ ଦିନ ଧରି ସଂସାର ବନ୍ଧନରେ ପଡ଼ି ଦୁଃଖ ପାଉଥିଲି । ଏଇଠି କେବଳ ଅଜ୍ଞାନକୁ ହଟାଇବାକୁ ହେବ । ଜ୍ଞାନକୁ ପ୍ରାପ୍ତ କରିବାର ନାହିଁ । ବାସ୍ତବରେ ତ ଜ୍ଞାନ-ଅଜ୍ଞାନ ଆତ୍ମାରେ ନାହିଁ । ଏହା ତ ସୂକ୍ଷ୍ମ ଶରୀରରେ ଅଛି, ସେହି ଆବରଣକୁ ହଟାଇବାକୁ ହେବ ଅର୍ଥାତ୍ ସେଥିରୁ "ମୁଁ" ଭାବ ହଟାଇନେବାକୁ ହେବ । 'ମୁଁ'ର ସାକ୍ଷୀ, 'ମୁଁ'ର ଅଧିଷ୍ଠାନ ଆତ୍ମା, ତୁମେ ନିତ୍ୟ । ତାହାର ଶକ୍ତିରେ ନାନା ପ୍ରକାରର ଦୃଶ୍ୟ ଉତ୍ପନ୍ନ ହୋଇଥାଏ । ପ୍ରତ୍ୟେକ ସଂକଳ୍ପ ସହିତ ଗୋଟିଏ ମୁଁ ଉତ୍ପନ୍ନ ହୋଇଥାଏ ତଥା ସେହି ସଂକଳ୍ପ ଲୋପ ହେଲାପରେ ମୁଁ'ର ବି ଲୋପ ହୋଇଯାଇଥାଏ । ପ୍ରତି ମୁହୂର୍ତ୍ତରେ ଅନେକ ସଂକଳ୍ପ ଉତ୍ପନ୍ନ ହେଉଛି ଏବଂ ନଷ୍ଟ ହେଉଛି । ସେହି ଅନୁପାତରେ ଅନେକ ମୁଁ ଉତ୍ପନ୍ନ ହେଉଛି ଏବଂ ନଷ୍ଟ ହେଉଛି- ଯେମିତି, ମୁଁ ରୋଗୀ, ମୁଁ ନିରୋଗ, ମୁଁ ଦୁଃଖୀ, ମୁଁ ସୁଖୀ, ମୁଁ ତ୍ୟାଗୀ, ମୁଁ ଭୋଗୀ ... ଇତ୍ୟାଦି ।

**ପ୍ରଶ୍ନ ୯୯– ମୃତ୍ୟୁ ପରେ ଜୀବର କ'ଣ ହୁଏ ?**

**ଉତ୍ତର –** ବର୍ତ୍ତମାନ ଜୀବିତ ଥିବା ଜୀବକୁ ଏହି ପ୍ରଶ୍ନ ପଚାରିବା ଅନୁଚିତ । ଦେହ ରହିତ ହୋଇ ଜୀବ ମୋତେ ପ୍ରଶ୍ନ ପଚାରୁ, ଯଦି ସମ୍ଭବ ହେଉଥାଏ । ଦେହଧାରୀ ଜୀବ ବର୍ତ୍ତମାନ ନିଜର ସମସ୍ୟାକୁ ଏବେ ସମାଧାନ କରୁ ତଥା ଏହା ଖୋଜୁ ଯେ, ସେ କିଏ ? ତା'ପରେ ଏହିଭଳି ଅଯଥା ପ୍ରଶ୍ନ ଶେଷ ହୋଇଯିବ ।

**ପ୍ରଶ୍ନ ୧୦୦– ଧ୍ୟାନ ଏବଂ ନିଦିଧ୍ୟାସନ ଭିତରେ ପ୍ରଭେଦ କ'ଣ ?**

**ଉତ୍ତର–** ଧ୍ୟାନବେଳେ କୌଣସି ଗୋଟିଏ ବସ୍ତୁ ଉପରେ ମନକୁ କେନ୍ଦ୍ରିଭୂତ କରିବାକୁ ପଡ଼ିଥାଏ, ଯେତେବେଳେ କି ନିଦିଧ୍ୟାସନରେ ଆତ୍ମବିଚାର କରିବାକୁ ପଡ଼ିଥାଏ । ତାହା ମୁଁ'ର ଭାବନା – 'ମୁଁ କିଏ ?' ଶେଷରେ ତୁମେ ନିଜକୁ ଆତ୍ମା ଭାବରେ ପାଇବ ।

**ପ୍ରଶ୍ନ ୧୦୧– କେଉଁ ଜପ ଶ୍ରେଷ୍ଠ ?**

**ଉତ୍ତର –** ମୁଁ କିଏ ? – ଏହି ବିଚାର ମନରେ ଉଠାଇବା ହିଁ ସର୍ବଶ୍ରେଷ୍ଠ ଜପ । ଶ୍ରୁତିବାକ୍ୟ 'ଅହଂ ବ୍ରହ୍ମାସ୍ମି'ର ତାତ୍ପର୍ଯ୍ୟ ନିଜ ସ୍ଥିତିରେ ରହିଛି । ମନର ବୃତ୍ତି ଦ୍ୱାରା କେବଳ ଧାରାବାହିକ ମନ୍ତ୍ର ଜପଦ୍ୱାରା କେହି ବ୍ରହ୍ମ ହୋଇପାରିବେ ନାହିଁ । ଏହାର ଭାବ

ହେଉଛି ଏୟା ଯେ, ବ୍ରହ୍ମ ଅନ୍ୟତ୍ର ନାହିଁ । ବ୍ରହ୍ମ ଅନ୍ୟ କିଛି ନୁହେଁ । ସେ ତୁମର ଆତ୍ମା, ସେ' ହିଁ ତୁମେ । ସେହି ଆତ୍ମାକୁ ବ୍ରହ୍ମସ୍ୱରୂପ ବୋଲି ଜାଣ –'ଅୟମାତ୍ମା ବ୍ରହ୍ମ' । ସେହି ଦେହରେ ଲୁଚିଥିବା 'ମୁଁ' ଆତ୍ମାକୁ ଖୋଜିନିଅ, ବ୍ରହ୍ମ ପ୍ରାପ୍ତ ହୋଇଯିବ । ବ୍ରହ୍ମ ପର୍ଯ୍ୟନ୍ତ ପହଞ୍ଚିବାର ପ୍ରୟାସ ସେମିତି କରନାହିଁ, ଯେମିତି ବ୍ରହ୍ମ କେଉଁଠି ଦୂର ସ୍ଥାନରେ ଅଛନ୍ତି ।

କାହାର 'ଶିବୋଽହଂ' ବା 'ଅହଂ ବ୍ରହ୍ମାସ୍ମି'ର ଧ୍ୟାନ କରିବାର କୌଣସି ଆବଶ୍ୟକତା ନାହିଁ । ଏହାର ମହତ୍ତ୍ୱକୁ ଖୋଜି, ତାକୁ ବୁଝିବା, ଜାଣିବା ଆବଶ୍ୟକ । ଧ୍ୟାନ, ଚିନ୍ତନ, ଇତ୍ୟାଦି ସବୁବେଳେ ଅନ୍ୟ ପାଇଁ ହୋଇଥାଏ । ଶବ୍ଦ ଗୁଡ଼ିକର ଜପ, ମନନ, ଧ୍ୟାନ ପର୍ଯ୍ୟାପ୍ତ ନୁହେଁ । ଜପ, ଧ୍ୟାନ, ବୃତ୍ତି ତ ମନକୁ ଅନ୍ୟ ବିଚାର ଗୁଡ଼ିକରୁ ହଟାଇ ଏକାଗ୍ର କରିବାର ହେତୁ । କେବଳ ଦେହାଭିମାନକୁ ନଷ୍ଟ କରିବା ହିଁ ଆତ୍ମସାକ୍ଷାତ୍‌କାର, ଆତ୍ମୋପଲବ୍‌ଧି, ଅଥବା ମୁକ୍ତି ।

'ଅହଂ ବ୍ରହ୍ମାସ୍ମି' ହେଉଛି ବିଚାର କେବଳ । ଏହା କିଏ କହୁଛି ? ସ୍ୱୟଂ ବ୍ରହ୍ମ ଏଭଳି କହନ୍ତି ନାହିଁ । ତାଙ୍କର ଏଭଳି କହିବା କ'ଣ ଦରକାର ? ବାସ୍ତବରେ ମୁଁ ଅର୍ଥାତ୍ ଆତ୍ମା ବି ଏଭଳି କହିପାରିବେ ନାହିଁ । କାରଣ ମୁଁ ସର୍ବଦା ବ୍ରହ୍ମଭାବରେ ସ୍ଥିର ରହେ । ଏହିଭଳି କହିବା କେବଳ ବିଚାର ମାତ୍ର । ଏହି ବିଚାର କାହାର ? ସମସ୍ତ ସଂକଳ୍ପ ଗୁଡ଼ିକର ଉତ୍ପତ୍ତି ନକଲି 'ମୁଁ' ଯୋଗୁ ଅର୍ଥାତ୍ ଅହଂଭାବ ଯୋଗୁ ହୋଇଛି । ନକଲି 'ମୁଁ'ର ମୂଳକୁ ଖୋଜିବ ତ ବାସ୍ତବ 'ମୁଁ' ଧରାପଡ଼ିବ । ଯାହା ଅବଶେଷରେ ରହିବ ତାହା ହେଉଛି ବାସ୍ତବ 'ମୁଁ' । ଏହା ଆତ୍ମା । 'ଅହଂ ବ୍ରହ୍ମାସ୍ମି' ମହାମନ୍ତ୍ର, ମହାବାକ୍ୟ ହେଉଛି ଏକାଗ୍ର ହେବାର ସାଧନ । ଏହା ଅନ୍ୟ ଅନାତ୍ମ ସଂକଳ୍ପଗୁଡ଼ିକୁ ଦୂର କରିଥାଏ । ବର୍ତ୍ତମାନ ଦେଖ ଯେ, ଏହି ବିଚାର କାହାର ? ତାପରେ ଜଣାପଡ଼ିବ ଏହାର ଉଦ୍‌ଗମ ଅହଂଭାବରୁ ହୋଇଛି । ଅହଂଭାବର ଉଦ୍‌ଗମ କେଉଁଠୁ ହେଉଛି ? ଏହାର ଶୋଧନ କର ଅହଂଭାବ ନଷ୍ଟ ହୋଇଯିବ, ପରମତତ୍ତ୍ୱ ଆତ୍ମା ସ୍ୱୟଂ ପ୍ରକାଶିତ ହୋଇଉଠିବେ । ଅନ୍ୟ କୌଣସି ଆଲୋକର ଆବଶ୍ୟକତା ନାହିଁ ।

ଯେତେବେଳେ କେବଳ ବାସ୍ତବ 'ମୁଁ' ଅବଶେଷରେ ରହିବ, ସେତେବେଳେ ସେ 'ଅହଂ ବ୍ରହ୍ମାସ୍ମି' କହିବ ନାହିଁ । କ'ଣ ସ୍ୱୟଂ ଶିବ ବାରମ୍ବାର ଏହା କହିବେ ଯେ 'ଶିବୋଽହଂ', 'ଶିବୋଽହଂ' । କଣ କେହି ଅନ୍ୟ ଲୋକ ଅଛନ୍ତି, ଯେ ତୁମକୁ ପଚାରୁଛନ୍ତି ଯେ, ତୁମେ କିଏ ? କାହାକୁ ନ ପଚାରି 'ଶିବୋଽହଂ', 'ସୋଽହଂ', 'ଅହଂ ବ୍ରହ୍ମାସ୍ମି', ରଟନା କରିବା, ଉଚ୍ଚାରଣ କରିବା ପାଗଳପଣିଆ ହେବ । କିଏ

ଭଲା ଏମିତି ଜପ କରିବ ଯେ, ମୁଁ ମନୁଷ୍ୟ, ମୁଁ ମନୁଷ୍ୟ । ଏହିଭଳି କହିବାତ ସେତେବେଳେ ଉଚିତ ହେବ, ଯେତେବେଳେ କେହି ତାକୁ ଆହ୍ୱାନ ଦେବ ଯେ, ତୁମେ ମନୁଷ୍ୟ ନୁହଁ, ତୁମେ ଅମଣିଷ । କେବେ କ'ଣ କେହି ଭୁଲରେ ନିଜକୁ ପଶୁ ବୋଲି ମାନିନିଏ ? ନାଁ । କାରଣ ସେ' ମନୁଷ୍ୟ । ସେହିପରି ଏକମାତ୍ର ମୁଁ – 'ବ୍ରହ୍ମ'ଙ୍କୁ ପୃଥକ ଆହ୍ୱାନ ଦେଲାବାଲା କେହି ନାହାନ୍ତି ଯେ, ତୁ ଜୀବ । ତେବେ ଏହି ଜପ କରିବାର କ'ଣ ଆବଶ୍ୟକତା ଯେ – ମୁଁ ଶିବ, ମୁଁ ବ୍ରହ୍ମ, ମୁଁ ମନୁଷ୍ୟ – ଏହି ବିଚାର ରହିଛି ତ ତାକୁ କାଟିବା ପାଇଁ ହିଁ ଶିବୋଽହଂ, ଅହଂବ୍ରହ୍ମାସ୍ମି ବୃତ୍ତିର ଆବଶ୍ୟକତା ରହିଛି, ନଚେତ୍ ନାହିଁ ।

'ସୋଽହଂ'ର ବି କାହିଁକି ମନନ କରାଯିବ ? ସ୍ୱୟଂ ତ ସେ, ଯେମିତି ମୁଁ ମନୁଷ୍ୟର ମନନ ବି କାହିଁକି କରାଯିବ ମନୁଷ୍ୟ ଦ୍ୱାରା ? ସେ' ତ ମନୁଷ୍ୟ । ସେହିପରି ସେ ବସ୍ତୁତଃ ସେ, ଅର୍ଥାତ୍ ଶିବ, ପୁଣି ଶିବୋଽହଂ, ସୋଽହଂ, ଅହଂବ୍ରହ୍ମାସ୍ମି ଜପ ବା ମନନ ବି କ'ଣ ଆବଶ୍ୟକ ? ସନ୍ଦେହୀ ଲୋକ ହିଁ ଜପ କରିବ ।

'ଗରୁଡୋଽହମ୍' ଭାବନା ଦ୍ୱାରା ମନୁଷ୍ୟ ଗରୁଡ ତ ହୋଇଯାଏ ନାହିଁ କିନ୍ତୁ ସର୍ପ ଦଂଶନର ପ୍ରଭାବ ନଷ୍ଟ ହୋଇଯାଏ । ସେହିପରି 'ଶିବୋଽହଂ' ଭାବନା ସମ୍ବନ୍ଧରେ ବି ସେୟା ଯେ, କୌଣସି ଜୀବ ଶିବ ରୂପରେ ତ ପରିବର୍ତ୍ତିତ ହୁଏ ନାହିଁ ବରଂ ଅନ୍ୟ ସବୁ ଅନାତ୍ମ ଅହଂକାର ବିନାଶକାରୀ, ଅଧୋଗତି ଦେଉଥିବା ପ୍ରଭାବ ନଷ୍ଟ ହୋଇଯାଏ ।

ଯେଉଁ ଲୋକ ବିନା ଚେଷ୍ଟାରେ ଆତ୍ମନିଷ୍ଠାରେ ସେହିଭଳି ରହିପାରେ, ଯେମିତି ମୁଁ ମନୁଷ୍ୟ, ସେତେବେଳେ ତାଙ୍କ ପାଇଁ ସୋଽହମ୍, ଶିବୋଽହଂ ଧ୍ୟାନର ଆବଶ୍ୟକତା ନାହିଁ – ଏହା ସର୍ବୋତ୍ତମ ସ୍ଥିତି । ଯଦି ସହଜାବସ୍ଥାରେ ନରହି ପାରୁଛ, ତେବେ ଏହିଭଳି ବିପର୍ଯ୍ୟୟ ବୁଦ୍ଧିଯୁକ୍ତ ଜପ ବା ଧ୍ୟାନ କର । ଜପ, ମନକୁ ଗୋଟିଏ ବିଚାର ଉପରେ ଦୃଢ ରହିବା ପାଇଁ ସହାୟତା କରିଥାଏ । ଜପ ବା ଧ୍ୟାନ ଦ୍ୱାରା ବିଭିନ୍ନ ବିଚାର, ସଂକଳ୍ପଗୁଡ଼ିକର ପ୍ରଶମନ ହୋଇ ଗୋଟିଏ ବୃତ୍ତି ସ୍ଥାୟୀ ହେବାର ଲାଗେ । ଜପର ଉଦ୍ଦେଶ୍ୟ ହେଉଛି ବିକ୍ଷିପ୍ତ ମନକୁ ଶାନ୍ତ କରିବା, ମୋକ୍ଷ ଦେବା ପାଇଁ ବା ଆତ୍ମାନୁଭୂତି କରାଇବା ପାଇଁ ନୁହେଁ । ଆତ୍ମୋପଲବ୍‌ଧି ତ ବିଚାର ଦ୍ୱାରା ହେବ, କୋଟିଏ କର୍ମ ଦ୍ୱାରା ନୁହେଁ । ଶାନ୍ତି ହିଁ ଆତ୍ମା ସାକ୍ଷାତ୍କାର । ଶାନ୍ତି ଭଙ୍ଗ ହେବାକୁ ଦିଅନାହିଁ । ଶାନ୍ତି ଆମର ବାସ୍ତବ ସ୍ୱରୂପ । ଏହା ପ୍ରାପ୍ତବ୍ୟ ବସ୍ତୁ ନୁହେଁ ।

**ବସ୍ତୁ ସିଦ୍ଧି ବିଚାରେଣ ନ କିଞ୍ଚିତ୍ କର୍ମ କୋଟିଭିଃ ।।**

**ପ୍ରଶ୍ନ ୧୦୨ – ରୋମାଞ୍ଚ, ଗଦ୍‌ଗଦ୍, ସ୍ୱରଭଙ୍ଗ, ଆନନ୍ଦାଶ୍ରୁ କ'ଣ ?**

**ଉତ୍ତର –** ଏସବୁ ମନର ନିଜ ଇଷ୍ଟଙ୍କ ସଂଯୋଗ ଅଥବା ବିଯୋଗ ଚିନ୍ତନର ଫଳସ୍ୱରୂପ ପ୍ରକଟ ଲକ୍ଷଣ । ବିନା ଦ୍ୱୈତ ଭାବରେ ଏହା ଉତ୍ପନ୍ନ ହୁଏନାହିଁ । ଦ୍ୱୈତଭାବକୁ ହିଁ ଭୟ ପ୍ରଦାନକାରୀ ବୋଲି କୁହାଯାଇଛି ।

**''ଦ୍ୱିତୀୟାଦ୍ ବୈ ଭୟଂ ଭବତି''**

ଜ୍ଞାନ, ସମାଧି, ପୂର୍ଣ୍ଣ ଶାନ୍ତିର ଅବସ୍ଥା, ପୂର୍ଣ୍ଣ ଏକତ୍ୱର ଅବସ୍ଥା, ଯେଉଁଠି ଏହା ପାଇଁ କୌଣସି ସ୍ଥାନର ମହତ୍ତ୍ୱ ନାହିଁ । ସମାଧିରୁ ବାହାରକୁ ଆସିଲା ପରେ ସାଧକ ସେହି ଅବସ୍ଥାର ଅନୁଭବକୁ ସ୍ମରଣ କରିଥାଏ, ସେତେବେଳେ ଏହି ଲକ୍ଷଣ ପ୍ରକାଶ ପାଏ । ବ୍ୟକ୍ତିତ୍ୱ ପୂର୍ଣ୍ଣ ଭାବରେ ନଷ୍ଟ ହୋଇଗଲେ ଏହି ଲକ୍ଷଣ ରହେନାହିଁ । ଯଦି ବ୍ୟକ୍ତିତ୍ୱର ଟିକିଏ କମ୍ ହେବ, ତେବେ ସେହି ସବୁ ଲକ୍ଷଣ ପ୍ରକଟ ହେବ ।

**ପ୍ରଶ୍ନ ୧୦୩ – ଜାଗ୍ରତ, ସ୍ୱପ୍ନ ତଥା ସୁଷୁପ୍ତି ଅବସ୍ଥା ଭିତରେ ଶ୍ରେଷ୍ଠ କିଏ ?**

**ଉତ୍ତର –** ଅବସ୍ଥାଗୁଡ଼ିକରେ କେହି ଉତ୍କୃଷ୍ଟ ବା ନିକୃଷ୍ଟ ନୁହେଁ । ସୁଷୁପ୍ତି, ସ୍ୱପ୍ନ, ଜାଗ୍ରତ, ଧ୍ୟାନ ତଥା ସମାଧି ଅବସ୍ଥାରେ ତୁମେ ହିଁ ଏକମାତ୍ର ସତ୍ୟ । ଏସବୁ ଅବସ୍ଥା ତୁମ ବିନା କିଛି ନୁହେଁ, ଯେତେବେଳେ କି ସେହି ଅବସ୍ଥାଗୁଡ଼ିକ ବିନା ବି ତୁମେ ରହିଛ ।

ସୁଷୁପ୍ତି ଅବସ୍ଥାରେ ସଂସାରର ଅଭାବ ଏବଂ ସହଜ ଆନନ୍ଦ ତିଷ୍ଠି ରହିଥାଏ । ସେଇଠି କୌଣସି ଶୋକ, ଭୟ, ଦୁଃଖ ନଥାଏ । ଅଭାବ, ଭୟ, ଶୋକ ତଥା ଦୁଃଖ ଜାଗ୍ରତ ଅବସ୍ଥାରେ ବା ସ୍ୱପ୍ନରେ ହିଁ ରହିଥାଏ । ତୁମେ ଉଭୟ ଅବସ୍ଥାରେ ହିଁ ଏକରସ, ଦ୍ରଷ୍ଟା, ସାକ୍ଷୀ, ଆନନ୍ଦ ସ୍ୱରୂପ । ତେବେ ଆନନ୍ଦରେ କାହିଁକି ଫରକ ପଡ଼ିଲା ? ବର୍ତ୍ତମାନ ଜାଗ୍ରତ ଅବସ୍ଥାରେ ମନ ଉଦୟ ହୋଇଗଲା । ଏହି ମନ, ଅହଂକାର–ଅହଂଭାବ ଦ୍ୱାରା ଉଦୟ ହୋଇଥାଏ । ଏବଂ ଅହଂଭାବ ନକଲି ମୁଁ, ଶୁଦ୍ଧ ଚୈତନ୍ୟ (ମୁଁ)ରୁ ଉଦୟ ହୋଇଥାଏ । ଯଦି ମନୁଷ୍ୟ ସାକ୍ଷୀ ଭାବରେ ରହେ, ତେବେ ତ ସେ ସର୍ବଦା ପ୍ରସନ୍ନ ରହିବ ।

**''ଜାଗ୍ରତ ସ୍ୱପ୍ନ ସୁଷୁପ୍ତାଦି ପ୍ରପଞ୍ଚ ଯଦ୍ ପ୍ରକାଶତେ'**
**ତଦ୍ ବ୍ରହ୍ମାହମିତି ଜ୍ଞାତ୍ୱା ସର୍ବ ବନ୍ଧେ ପ୍ରମୁଚ୍ୟତେ ।''**

–କୈବଲ୍ୟୋପନିଷଦ

ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି, ସମାଧି, ମୂର୍ଚ୍ଛା, ଧ୍ୟାନ ଇତ୍ୟାଦି ପ୍ରପଞ୍ଚର ସାକ୍ଷୀ, ଆତ୍ମା ଭାବରେ ଜ୍ଞାନୀ ନିଜକୁ ଜାଣିଥାଏ । ଅଜ୍ଞାନୀ ପାଇଁ ଜାଗ୍ରତ ସ୍ୱପ୍ନ, ସୁଷୁପ୍ତି, ସମାଧି, ଧ୍ୟାନ ଇତ୍ୟାଦି ଅବସ୍ଥାଗୁଡ଼ିକ ସତ୍ୟ । ଜ୍ଞାନୀ ଦେହ ନୁହେଁ, ସେ'ତ ସବୁର ଆତ୍ମା ।

ସୁଷୁପ୍ତି ଅବସ୍ଥାର ଆନନ୍ଦ ପରିଚ୍ଛିନ୍ନ କିନ୍ତୁ ଜ୍ଞାନୀର ଆନନ୍ଦ ସ୍ଥିତି ନିତ୍ୟ, ଏକରସ ରହିଥାଏ । ସୁଷୁପ୍ତି ଚେତନ ଅବସ୍ଥା ନୁହେଁ, ସେଇଠି କିଛି ଜଣାପଡ଼େ ନାହିଁ, ଯେତେବେଳେ କି ଜ୍ଞାନୀ ହେଉଛି ସର୍ବଦା ଚେତନ ।

ସୁଷୁପ୍ତିରୁ ଜାଗ୍ରତ ଅବସ୍ଥାରେ ପ୍ରବେଶ କରିବା ସମୟରେ 'ଅହଂ' ଭାବର ଉଦୟ ହୋଇଥାଏ । ମନ ସକ୍ରିୟ ହୋଇଯାଏ । ସଂକଳ୍ପ ଉତ୍ପନ୍ନ ହେବାକୁ ଲାଗେ । ପରେ ପରେ ଦୈହିକ କ୍ରିୟାଗୁଡ଼ିକ ଆରମ୍ଭ ହେବାକୁ ଲାଗେ । ସୁଷୁପ୍ତି ଅବସ୍ଥାରେ ସବୁର ଅଭାବ ରହିଥାଏ । ଏହି ଅବସ୍ଥା ଜାଗ୍ରତ, ସ୍ୱପ୍ନ ଅପେକ୍ଷା ଚେତନାର ଅଧିକ ନିକଟବର୍ତ୍ତୀ ।

**ପ୍ରଶ୍ନ ୧୦୪– କ'ଣ ଈଶ୍ୱର, ଜୀବ, ଜଗତ ସତ୍ୟ ?**

**ଉତ୍ତର –** ଯଦି ଏସବୁ ସତ୍ୟ ହୋଇଥାନ୍ତେ, ତେବେ ସୁଷୁପ୍ତି ଅବସ୍ଥାରେ ସେହିପରି ରହିଥାନ୍ତେ, ଯେମିତି ଆତ୍ମା ରହିଥାଏ । ଈଶ୍ୱରଙ୍କର ଏହି ବିଚାର କେବଳ ଜାଗ୍ରତରେ ହିଁ ରହିଥାଏ । ଏସବୁ ହେଉଛି ନକଲି 'ମୁଁ' ଜୀବର କଳ୍ପନା । ଏସବୁ ଜାଗ୍ରତ ଅବସ୍ଥାରେ ଅହମ୍ ଭାବର ଉଦୟ ହେଲା ପରେ ହିଁ ସୃଷ୍ଟି ହୋଇଥାଏ । ଗହନ ନିଦ୍ରାରେ ଏହାର ବିଚାର ଉଦୟ ହୁଏନାହିଁ । ଗହନ ନିଦ୍ରାରେ ତୁମେ ଥିଲ ତଥା ସେହି ତୁମେ ବର୍ତ୍ତମାନ କହୁଅଛ । ଯଦି ସେହି ଭେଦ ଯଥାର୍ଥ ହୋଇଥାନ୍ତା, ତେବେ ସୁଷୁପ୍ତିରେ ବି ହୁଅନ୍ତା । ଏହି ଭେଦ ପ୍ରତୀତିଗୁଡ଼ିକ କେବଳ ଅହଂ ଭାବ ଉପରେ ଆଧାରିତ । ପୁଣି କ'ଣ ଜଗତ, ଈଶ୍ୱର, ଜୀବ ତୁମକୁ କହନ୍ତି ଯେ, ମୁଁ ହେଉଛି ଜଗତ, ମୁଁ ହେଉଛି ଈଶ୍ୱର ? କ'ଣ ଦେହ କହେ ମୁଁ ଅଛି ? ତୁମେ କହୁଛ ଏହି ଜଗତ ଅଛି । ଏହା ଶରୀର । ଇଏ ଦେବତା । ଇଏ ମାୟା । ସେହିପରି ଏସବୁ ହେଉଛି ତୁମ ମନର କଳ୍ପନା । ତୁମେ ନିଜକୁ ଚିହ୍ନ ଯେ, ତୁମେ କିଏ ? ସମସ୍ତ ସଂଶୟ ଦୂର ହୋଇଯିବ ।

**ପ୍ରଶ୍ନ ୧୦୫– ଏକ ଆତ୍ମା ତ ସତ୍ୟ, ପୁଣି ଜଡ଼–ଚେତନ ଭେଦ କାହିଁକି ?**

**ଉତ୍ତର –** ଆରମ୍ଭରୁ ମଣିଷକୁ ଏହା ବୁଝେଇଦେବା ଆବଶ୍ୟକ ଯେ, ସେ ଶରୀର ନୁହେଁ, କାରଣ ସେ ବୁଝିଥାଏ ଯେ, ସେ କେବଳ ଶରୀର । ଯେତେବେଳେ କି ଶରୀର ହେଉଛି ତାହାର ରହିବା ପାଇଁ ଘର କେବଳ । ସେଥିପାଇଁ ପ୍ରଥମେ ସେ ଜଡ଼ ଚେତନର ଭେଦ ବୁଝିବା ଆବଶ୍ୟକ ଏବଂ ତା'ପରେ ସେ କେବଳ ଚେତନ ହୋଇ ରହିବା ଦରକାର । ଏହା ବିବେକ । ଏହି ପ୍ରାରମ୍ଭିକ ବିବେକ ଶେଷ ପର୍ଯ୍ୟନ୍ତ ତିଷ୍ଠି ରହିବା ଆବଶ୍ୟକ । ଏହାର ଫଳ ହେଉଛି ମୋକ୍ଷ । କେବଳ ଦେହର ଅହଂକାରକୁ ହିଁ ନଷ୍ଟ କରିବାକୁ ହେବ । ତୁମେ ଆତ୍ମା ସଦାମୁକ୍ତ ।

ଜ୍ଞାନୀଙ୍କ ଦୃଷ୍ଟିରେ ଆତ୍ମା ଉପରେ (ଭିନ୍ନ) କିଛି ହେଲେ ନାହିଁ । ସବୁ କିଛି ଆତ୍ମାରେ ରହିଛି । ଏହି ଅନୁମାନ ମିଥ୍ୟା ଯେ, ଜଗତ ଅଛି । ସେଥିରେ ଗୋଟିଏ ଶରୀର ଅଛି ତଥା ସେହି ଶରୀରରେ ତୁମେ ନିବାସ କରୁଛ । ଯଦି ଏକମାତ୍ର ସତ୍ୟାତ୍ମାକୁ ଜାଣିନେଲ, ତେବେ ଜଗତ ତଥା ତାହା ପରେ ଯାହା କିଛି ଅଛି, କେବଳ ଆତ୍ମାରେ ହିଁ ପ୍ରତୀତ ହେଉଛି । ତୁମର ଜନ୍ମ ହୋଇନାହିଁ, ଏହାକୁ ଜାଣିବା ହିଁ ମୋକ୍ଷ । ଶାନ୍ତ ରୁହ ଏବଂ ଜାଣ ଯେ, ମୁଁ ହିଁ ପରମାତ୍ମା । ତୁମେ ଦେହ ନୁହଁ । ତୁମେ ହେଉଛି ଶୁଦ୍ଧ ଜ୍ଞାନ-ସ୍ୱରୂପ ।

**ପ୍ରଶ୍ନ ୧୦୬- ଅହଂକାରର ନାଶ ହେବ କେମିତି ?**

**ଉତ୍ତର** - ସୁଷୁପ୍ତି ଅବସ୍ଥାର ସ୍ମରଣ କର । କ'ଣ ତୁମକୁ କିଛି ହେବାର ବୋଧ ହେଲା ? ଯଦି ଧନ, ପୁତ୍ର, ମିତ୍ର, ଦେବ, ଜଗତ ସତ୍ୟ ହୋଇଥାନ୍ତା, ତେବେ ସୁଷୁପ୍ତିରେ ବି ଏସବୁ ପ୍ରପଞ୍ଚ ତୁମ ସହିତ ବର୍ତ୍ତମାନ ଭଳି ରହିବା ଉଚିତ ଥିଲା । କିନ୍ତୁ ସୁଷୁପ୍ତିରେ ତୁମର ଅସ୍ତିତ୍ୱ ବ୍ୟତୀତ ଏହାର କୌଣସି ଚିହ୍ନ, ସ୍ମରଣାଦି ବି ନଥିଲା । ତୁମେ ଏହି କଥାକୁ ବି ସ୍ୱୀକାର କରୁଛ ଯେ, ସୁଖ ରୂପ ସେଇଠି ଥିଲା ଏବଂ ଦୁଃଖରୂପ ଦୃଶ୍ୟ ଜଗତର ସେଇଠି କିଛି ହେଲେ ଠିକଣା ନଥିଲା । ବର୍ତ୍ତମାନ ଏଠାରେ କ'ଣ ପାର୍ଥକ୍ୟ ଦେଖାଗଲା ? ବର୍ତ୍ତମାନ ଏଠାରେ ସେହି ସହଜ ସୁଖରେ 'ଅହଂକାର' ବାଧକ ହୋଇଗଲା । ଜାଗ୍ରତ ଅବସ୍ଥାରେ ଏହି ନୂଆ ବସ୍ତୁ ଉଦୟ ହୋଇଗଲା । ସୁଷୁପ୍ତିରେ ଅହଂକାରର ଅସ୍ତିତ୍ୱ ନଥିଲା । ଅହଂକାରର ଜନ୍ମ ହିଁ ଜୀବର ପ୍ରାକଟ୍ୟ, ବ୍ୟକ୍ତିର ଜନ୍ମ । ଅନ୍ୟ ପ୍ରକାରେ 'ଜନ୍ମ' ନାମକ କୌଣସି ବସ୍ତୁ ନାହିଁ । ଯାହାର ଜନ୍ମ ଅଛି, ତାହାର ମୃତ୍ୟୁ ଅବଶ୍ୟମ୍ଭାବୀ । ଅହଂକାରର ଯେଉଁ ପ୍ରକାଶକ ଶେଷରେ ଥିବା ଆତ୍ମା ରହିଛି, ତାହା ହିଁ ଆନନ୍ଦ । ତାହା ହିଁ ଅମରତ୍ୱ ।

**ପ୍ରଶ୍ନ ୧୦୭- ଅହଂକାରର ଉଦୟ କେମିତି ହେଲା ?**

**ଉତ୍ତର** - ଅହଂକାର ବୋଲି କିଛି ନାହିଁ । ଅନ୍ଧକାରର ଉଦୟ କେମିତି ହେଲା ବୋଲି ଯଦି କେହି ପଚାରେ, ତେବେ କହିବାକୁ ହେବ ଯେ, ଅନ୍ଧକାର ବୋଲି କିଛି ହେଲେ ନାହିଁ, କେବଳ ଆଲୋକର ଅଭାବ ରହିଛି। ଆଲୋକ ହେଲେ ଅନ୍ଧାର ଲୋପ ହୋଇଯାଏ । ଆଲୋକକୁ ପ୍ରକଟ କରିବାକୁ ପଡ଼ିଥାଏ । ଅନ୍ଧକାରକୁ ବାହାର କରିଦେବାକୁ ପଡ଼େନାହିଁ । ସେହିପରି ଆତ୍ମଭାବକୁ ପ୍ରକଟ କରାଇବାକୁ ହେବ, ଫଳରେ ଅହଂକାର ଲୁପ୍ତ ହୋଇଯିବ । ଅବିଦ୍ୟା, ଅହଂକାର ହେଉଛି ଆତ୍ମଜ୍ଞାନ ନ ହେବା ଅବସ୍ଥାର ନାମ । ଏଣୁ ଦେହଭାବକୁ, କର୍ତ୍ତାଭାବକୁ ଆତ୍ମଭାବ ଦ୍ୱାରା ବିଲୟ କର । ଅହଂକାର ହିଁ ନାହିଁ ।

ଆମର ସମସ୍ତ ଦୁଃଖର କାରଣ ହେଉଛି ଦେହଭାବ । ଏହି ଧାରଣା ତ୍ୟାଗ କରିଦିଅ ଯେ, 'ମୁଁ ଏମିତି, ମୁଁ ସେମିତି ।''

ଯେତେବେଳେ 'ମୁଁ' କୁ କେବଳ 'ମୁଁ' ରୂପ ବୋଲି ମାନି ନିଆଯାଏ, ସେତେବେଳେ ଅହଂକାରର ନାମ ବି ରହେନାହିଁ, ଯେମିତି ସୂର୍ଯ୍ୟଙ୍କ ଆଗରେ ଅନ୍ଧକାର । ଯେତେବେଳେ 'ମୁଁ'କୁ ମୁଁ ରୂପରେ ନଜାଣି 'ମୁଁ'କୁ ଏହି ରୂପରେ ବା ସେହି ରୂପରେ ମାନି ନିଆଯାଏ, ଉପାଧିବାନ କରି ଦିଆଯାଏ, ତାହାକୁ ଅହଂକାର କୁହାଯାଏ । ବାସ୍, ଆତ୍ମନିଷ୍ଠା ଦ୍ୱାରା ଦେହ ଭାବକୁ ନଷ୍ଟ କରିବାକୁ ହେବ ।

**ପ୍ରଶ୍ନ ୧୦୮– ଭୟ, ଶୋକ, ସଂଶୟର କାରଣ କ'ଣ ?**

**ଉତ୍ତର –** ଯେପର୍ଯ୍ୟନ୍ତ ଆତ୍ମ ସାକ୍ଷାତ୍କାର ହୋଇନାହିଁ, ସେପର୍ଯ୍ୟନ୍ତ ସନ୍ଦେହ, ଭୟ, ଶୋକ ବ୍ୟକ୍ତିର ମନରେ ରହିବା ସ୍ୱାଭାବିକ ।

ଅହଂକାର ହିଁ ସେମାନଙ୍କର ଜନକ । ଅହଂକାରର ନିବାରଣ ହିଁ ହେଉଛି ସେମାନଙ୍କର ନିବାରଣ । ଅହଂକାର ସ୍ୱୟଂ ଅସତ୍ୟ । ଅହଂକାର କେଉଁ ବସ୍ତୁ ତାହାର ଅନୁସନ୍ଧାନ କର । ଦେହ ଜଡ଼, ସେଥିପାଇଁ ସେ 'ମୁଁ' ରୂପରେ ଅହଂକାର କରିପାରିବ ନାହିଁ । ଆତ୍ମା ଶୁଦ୍ଧ, ଅଦ୍ୱୈତ ଏବଂ ଚିତ୍–ସେ'ବି ମିଥ୍ୟା ଅହଂକାର କରିପାରିବ ନାହିଁ । ସୁଷୁପ୍ତିରେ କେହି ମୁଁ ପଣିଆର ଅହଂକାର କରେନାହିଁ । ବର୍ତ୍ତମାନ ଏହି ଅହଂକାର ସୁଷୁପ୍ତି, ନିଷ୍କ୍ରିୟ ଦେହ ତଥା ଆତ୍ମାର ମଝିରେ କୌଣସି ମିଥ୍ୟାବସ୍ତୁ ହୋଇଥିବ । ଏହାର ଅସ୍ତିତ୍ୱର କୌଣସି ଆଧାର ନାହିଁ । ସେହି ଅହଂକାରର ମୂଳକୁ ଖୋଜିଲେ ତାହା ଏମିତି ଭାବରେ ଲୁପ୍ତ ହୋଇଯାଏ, ଯେମିତି ଆଲୋକ ହେଉ ହେଉ ଅନ୍ଧାକାର ଲୁପ୍ତ ହୋଇଯାଇଥାଏ ।

**ପ୍ରଶ୍ନ ୧୦୯– ଆତ୍ମା ଅଧିଷ୍ଠାନ ଏବଂ ଜଗତ ଅଧ୍ୟସ୍ତ କାହିଁକି ?**

**ଉତ୍ତର –** ଚଳଚ୍ଚିତ୍ରର ପର୍ଦ୍ଦା ଉପରେ ଚିତ୍ର ପ୍ରକ୍ଷିପ୍ତ ହୋଇଥାଏ । କିନ୍ତୁ ପର୍ଦ୍ଦା ଉପରେ ଚଳଚ୍ଚିତ୍ରରେ ଦେଖାଯାଉଥିବା ବନ୍ୟାର ପାଣି ଦ୍ୱାରା ଏବଂ ନଗରରେ ଲାଗିଥିବା ପ୍ରଚଣ୍ଡ ଅଗ୍ନି ଦ୍ୱାରା ପର୍ଦ୍ଦା ଉପରେ କିଛି ପ୍ରଭାବ ପଡ଼େନାହିଁ । ନା ଜଳରେ ସେ ଭିଜିଥାଏ ନା ଅଗ୍ନିରେ ସେ ଜଳିଥାଏ ? ଦର୍ଶକ ବି ଚିତ୍ର ଦେଖୁଥାଏ କିନ୍ତୁ ଚିତ୍ରପଟ୍ଟକୁ ଉପେକ୍ଷା କରିଥାଏ । ସେହି ସମସ୍ତ ଚିତ୍ର, ଚିତ୍ରପଟ୍ଟ ଠାରୁ ପୃଥକ ହୁଏ ନାହିଁ । ତଥାପି ପର୍ଦ୍ଦା ଗୁପ୍ତ ହୋଇ ରହିଥାଏ ଏବଂ ଅଧ୍ୟସ୍ତ ଚିତ୍ର ସେହି ଅଧିଷ୍ଠାନ ପର୍ଦ୍ଦା ଉପରେ ପ୍ରତିବିମ୍ବିତ ହେଉଥିବାର ଦେଖା ଯାଉଥାଏ ।

ସେହିପରି ଆତ୍ମା ହେଉଛି ପର୍ଦ୍ଦା, ଯାହା ଉପରେ ଜଗତ ଚଳଚ୍ଚିତ୍ର ଚାଲିଛି, କ୍ରିୟାଗୁଡ଼ିକ ହେଉଛି । ମନୁଷ୍ୟକୁ ଦେହ ସଂଘାତର କ୍ରିୟାଗୁଡ଼ିକ ସମ୍ବନ୍ଧରେ ତ

ବୋଧ ହୋଇଥାଏ କିନ୍ତୁ ସର୍ବାଧାର ଆତ୍ମା ସମ୍ବନ୍ଧରେ ହୁଏନାହିଁ । ତଥାପି ସମସ୍ତ ଦୃଶ୍ୟ ଆତ୍ମା ଠାରୁ ପୃଥକ୍ ନୁହେଁ । କ୍ରିୟାଗୁଡ଼ିକ ସେମିତି ହୋଇ ଚାଲିଥାଏ ।

ଅଜ୍ଞାନ ଲୋକ, ଜ୍ଞାନୀଙ୍କର ଦେହ ସଂଘାତର କ୍ରିୟାଗୁଡ଼ିକ ହେଉଥିବାର ଦେଖି ଭ୍ରମିତ ହୋଇଥାଏ । କ୍ରିୟାଗୁଡ଼ିକର ବ୍ୟବହାର ଜ୍ଞାନୀ-ଅଜ୍ଞାନ ଉଭୟଙ୍କ ଦ୍ୱାରା ହୋଇଥାଏ । କିନ୍ତୁ ଉଭୟଙ୍କ ଦୃଷ୍ଟିକୋଣ ଭିନ୍ନ ।

ଚିତ୍ରପଟ୍ଟ ଉପରେ ଚିତ୍ର ଚାଲିଥାଏ, ସେମାନଙ୍କୁ ଧରିବାକୁ ଚେଷ୍ଟା କଲେ ସେମାନେ ଧରାଦିଅନ୍ତି ନାହିଁ, ଦିଗ ବଦଳାଇ ଦେଲେ ସେମାନେ ବଦଳି ପାରିବେ ନାହିଁ । କେବଳ ପର୍ଦ୍ଦା ହିଁ ଧରାପଡ଼ିଥାଏ । ଚିତ୍ରଗୁଡ଼ିକ ସରିଗଲା ପରେ ବି ଥାଏ ସେହି ପର୍ଦ୍ଦା । ଏଠାରେ ମଧ୍ୟ ସେମିତି ହୋଇଥାଏ । ଜଗତ ଭାସମାନ ହେଉଅଛି । ଏହା ଦେଖ ଯେ, ଜଗତ କାହା ଦ୍ୱାରା ଭାସମାନ ହେଉଅଛି ? 'ମୁଁ'ର ଆଧାର ସତ୍ୟାତ୍ମାକୁ ଧର । ଆଧାରକୁ ଗ୍ରହଣ କରିନେଲା ପରେ ଜଗତ ଭାସମାନ ହେଉଛି ନା ନାହିଁ ସେଥିରେ କ'ଣ ପାର୍ଥକ୍ୟ ଆସୁଛି ?

ଲୋକେ ଧ୍ୟାନ କରୁଛନ୍ତି, ଦୃଷ୍ଟିକୁ ଭ୍ରୂମଧ୍ୟରେ ତ କେନ୍ଦ୍ରୀଭୂତ କରି ଦେଉଛନ୍ତି କିନ୍ତୁ ଦ୍ରଷ୍ଟାକୁ ଦୃଷ୍ଟିରେ ଲୁଚେଇ ଦିଆଯାଉଛି । ଦ୍ରଷ୍ଟାକୁ ନିରନ୍ତର ଦୃଷ୍ଟିରେ ରଖାଯିବା ଉଚିତ । ଅଜ୍ଞାନ ଜଗତକୁ ସତ୍ୟ ବୋଲି ମାନି ନେଉଥିଲା ବେଳେ ଜ୍ଞାନୀ ତାକୁ କେବଳ ଆତ୍ମାର, ଅଭିବ୍ୟକ୍ତି ବୋଲି ମାନିଥାଏ । ଦ୍ରଷ୍ଟା, ଦର୍ଶନ ତଥା ଦୃଶ୍ୟ ରୂପକ ତ୍ରିପୁଟୀ ସବୁ ହେଉଛି ସେହି ଚୈତନ୍ୟ ଅର୍ଥାତ୍ ନିଜ ଅସ୍ତିତ୍ୱର ଅଭିବ୍ୟକ୍ତି ।

**ପ୍ରଶ୍ନ ୧୧୦– ଜ୍ଞାନାଗ୍ନି ଦ୍ୱାରା ପ୍ରାରବ୍ଧ କର୍ମ କାହିଁକି ଜଳିଯାଏ ନାହିଁ ?**

ଉତ୍ତର – ସମସ୍ତ କର୍ମ ଭସ୍ମସାତ୍ ହୋଇଯିବା ହିଁ ଜ୍ଞାନାଗ୍ନିର ଚମତ୍କାରିତା । ଜ୍ଞାନୀ ସେ, ଯେ ନିଜ ଦେହ ଠାରୁ ଅଲଗା ଆତ୍ମା ହୋଇଯାଇଛନ୍ତି । ବର୍ତ୍ତମାନ ଆତ୍ମନିଷ୍ଠ ଜ୍ଞାନୀ ମହାପୁରୁଷଙ୍କ ପାଇଁ ପ୍ରାରବ୍ଧ ନାହିଁ କି ସାମାନ୍ୟ ପରିମାଣରେ ସଞ୍ଚିତ, କ୍ରିୟମାଣ ନାହିଁ ।

ପ୍ରାରବ୍ଧ ନଷ୍ଟ ହୁଏନାହିଁ, ସଞ୍ଚିତ-କ୍ରିୟମାଣ ନଷ୍ଟ ହୁଏ- ଏହିଭଳି କହିବାକୁ ତ ସେମିତି କୁହାଯିବ, ଯେମିତି କୌଣସି ଲୋକର ତିନୋଟି ପତ୍ନୀ ଅଛନ୍ତି ଏବଂ ଲୋକଟି ମରିଗଲେ କ'ଣ ଏମିତି କୁହାଯାଇପାରିବ ଯେ, ଦୁଇଟି ପତ୍ନୀ ବିଧବା ହେବ କିନ୍ତୁ ଜଣେ ସଧବା ହୋଇ ରହିବ ? ନାଁ, ତିନିଜଣଙ୍କୁ ବିଧବା କୁହାଯିବ । ସେହିପରି ଜ୍ଞାନାଗ୍ନି ଦ୍ୱାରା ତିନି ପ୍ରକାରର କର୍ମ ନଷ୍ଟ ହୋଇଯାଏ । ଜ୍ଞାନ ହୋଇଗଲା ପରେ, ଯେତେବେଳେ ସେଠାରେ କୌଣସି କର୍ତ୍ତା-ଭୋକ୍ତା ହିଁ ନାହାନ୍ତି, ସେତେବେଳେ ପ୍ରାରବ୍ଧ କାହା ପାଇଁ ବଞ୍ଚି ରହିବ, କିଏ ତାକୁ ଭୋଗ କରିବ ?

ଜ୍ଞାନୀଙ୍କ ପାଇଁ ଆତ୍ମାଙ୍କ ଠାରୁ ଅଲଗା ନା ଦେହ ଅଛି ନା କର୍ମ, ନା କର୍ତ୍ତା ଅଛି ନା ଭୋକ୍ତା, ସେ' କେବଳ ସାକ୍ଷୀ ।

ଜ୍ଞାନ ହେଲାପରେ ବି ପ୍ରାରବ୍ଧ ବଞ୍ଚି ରହିଥାଏ–ଏହି ସମାଧାନ ଜ୍ଞାନୀଙ୍କ ପାଇଁ ନୁହେଁ ବରଂ ସେହି ଅଜ୍ଞାନ ଲୋକମାନଙ୍କ ପାଇଁ ଥାଏ, ଯେଉଁମାନଙ୍କର ଦୃଷ୍ଟିରେ ଜ୍ଞାନୀଙ୍କ ଶରୀର ଏବଂ ଭୋଗ ଦୃଷ୍ଟିଗୋଚର ହେଉଛି । ସେମାନଙ୍କୁ କୁହାଯାଇଥାଏ ଯେ, ଯେଉଁ କର୍ମଗୁଡ଼ିକ ପାଇଁ ଦେହ ପ୍ରାପ୍ତ ହୋଇଛି, ସେଗୁଡ଼ିକୁ ଭୋଗ କଲାପରେ ତାହା ସମାପ୍ତ ହୋଇଯିବ, ଯେମିତି କାଠକୁ ଅଗ୍ନି ଜଳାଇଦେଇ ନିଜେ ଶାନ୍ତ ହୋଇଯାଇଥାଏ ।

ମାତ୍ର କ'ଣ ଜୀବ ବ୍ୟତୀତ କୌଣସି ଶରୀର କୌଣସି କର୍ମର କର୍ତ୍ତା ବା ଭୋକ୍ତା ହୋଇପାରିବ ? ଜୀବ ହିଁ କର୍ତ୍ତା ଥିଲା, ସେ' ହିଁ ଭୋକ୍ତା ହୋଇଥାଏ । କିନ୍ତୁ ସଦ୍‌ଗୁରୁଙ୍କ ଦ୍ୱାରା ଜ୍ଞାନ ପ୍ରାପ୍ତ ହୋଇଗଲେ, ଜୀବଭାବ ବ୍ରହ୍ମଭାବରେ ବିଲୀନ ହୋଇଯାଏ । ଏବେ ନା ବଞ୍ଚେ କର୍ତ୍ତା ନା ଭୋକ୍ତା ? ଦେହ ଶୁଖିଲା ପତ୍ର ବା ପାଚିଲା ଫଳ ପରି ସମୟର ପ୍ରତୀକ୍ଷାରେ ଥାଏ । ସମୟ ପାଇଲେ ଝଡ଼ିପଡ଼ିବ ।

**ପ୍ରଶ୍ନ ୧୧୧– କ'ଣ ପୁନର୍ଜନ୍ମରୁ ରକ୍ଷା ପାଇବାର କୌଣସି ଉପାୟ ଅଛି ?**

**ଉତ୍ତର** – ହଁ । ଏୟା ଅନୁଧ୍ୟାନ କର ଯେ, ଜନ୍ମ କାହାର ହୋଇଥାଏ ତଥା ବର୍ତ୍ତମାନ ଜୀବନର ଦୁଃଖ କିଏ ଭୋଗ କରୁଛି ? ଯେତେବେଳେ ତୁମେ ସୁଷୁପ୍ତିରେ ଥାଅ, ସେତେବେଳେ କ'ଣ ତୁମର ପୁନର୍ଜନ୍ମ ବା ବର୍ତ୍ତମାନ ଜୀବନର ବିଚାର ଆସିଥାଏ ? ଏଣୁ ବର୍ତ୍ତମାନ ସମସ୍ୟାର ସମାଧାନ ବି ଅଛି । ତୁମକୁ ଏହା ସ୍ପଷ୍ଟ ହୋଇଯିବ ଯେ, ନା ଜନ୍ମ ଅଛି ନା ବର୍ତ୍ତମାନର ଦୁଃଖ ଏବଂ କ୍ଳେଶ । କେବଳ ତୁମେ ଆତ୍ମା । ପରମାନନ୍ଦ ସ୍ୱରୂପ ଆତ୍ମା ବର୍ତ୍ତମାନ ଏଇଠି ଅଜନ୍ମା ରୂପରେ ହିଁ ବିଦ୍ୟମାନ । ବାସ୍ତବରେ ଆମେ ଏହି ଶୁଦ୍ଧ ବୋଧ ଦ୍ୱାରା ପୁନର୍ଜନ୍ମରୁ ମୁକ୍ତ ହୋଇଯାଉ ।

**ପ୍ରଶ୍ନ ୧୧୨– ଦୁଃଖରୁ କେମିତି ରକ୍ଷା ପାଇବା ?**

**ଉତ୍ତର** – ଯାହାକୁ ତୁମେ ସ୍ୱୀକାର କରି ନେଉଛ ତାହାର ସେପାଖକୁ ବାହାରି ଯାଉଥିଲେ, ସେ ତୁମକୁ ଅଟକେଇ ପାରିବ ନାହିଁ, ଦୁଃଖୀ କରିପାରିବ ନାହିଁ, ବାନ୍ଧି ରଖିପାରିବ ନାହିଁ । ସୁଖୀ ସେ ହେବ, ଯେ ଦୁଃଖରୁ ବଞ୍ଚିବାକୁ ଚାହୁଁଛି, ଉଦାସୀନ ରହୁଛି ଏବଂ ଯେ ସୁଖ–ଦୁଃଖ ଦ୍ୱନ୍ଦ୍ୱର ସାକ୍ଷୀ ହୋଇଯାଇଛି, ତାଙ୍କୁ ସୁଖ–ଦୁଃଖ, ପୂର୍ଣ୍ୟ–ପାପ, ବନ୍ଧନ–ମୋକ୍ଷ, ଜନ୍ମ–ମୃତ୍ୟୁ ସ୍ପର୍ଶ କରିପାରିବ ନାହିଁ ।

ସୁଖ–ଦୁଃଖ ପୂର୍ବକୃତ କର୍ମଗୁଡ଼ିକର ପରିଣାମ, ବର୍ତ୍ତମାନ କର୍ମର ନୁହେଁ । ସୁଖ–ଦୁଃଖ କ୍ରମାନୁସାରେ ଆସୁଛି ତଥା ବୁଦ୍ଧିମାନ ଲୋକ ଅଧୈର୍ଯ୍ୟ ନ ହୋଇ ତା'ର

ଯିବା ଆସିବାକୁ ଦେଖି ଚାଲିବା ଉଚିତ । ଧୈର୍ଯ୍ୟ ସହକାରେ ଦେଖି ଚାଲିବା ଉଚିତ, ଭୋଗ କରିବା ଉଚିତ । ମନୁଷ୍ୟର ସର୍ବଦା ଆତ୍ମନିଷ୍ଠା ରହିବା ଉଚିତ । ନିଷ୍କାମ ଭାବରେ କର୍ମ କରି ତାହାର ପରିଣାମର ଚିନ୍ତା କରିବା ଉଚିତ୍ । କଦବା କେତେବେଳେ ପ୍ରାପ୍ତ ଦୁଃଖ-ସୁଖ ଯୋଗୁ ନିଜ ଲକ୍ଷ୍ୟ ପଥରୁ ବିଚଳିତ ନ ହେବା ଉଚିତ୍ ।

ସୁଖ-ଦୁଃଖ ମନର ଧର୍ମ । ଆମର ସ୍ୱଭାବ ହେଉଛି ଆନନ୍ଦ । କିନ୍ତୁ ଆମେ ନିଜର ଆନନ୍ଦ ସ୍ୱରୂପାତ୍ମାକୁ ଭୁଲିଯାଇ ଦେହ, ଇନ୍ଦ୍ରିୟ, ପ୍ରାଣ ଏବଂ ମନ, ବୁଦ୍ଧି ଦୃଶ୍ୟ ଦେହ ସଂଘାତକୁ ନିଜର ସ୍ୱରୂପ ଭ୍ରାନ୍ତି ଯୋଗୁ ମାନି ନେଉଛୁ ଯେ, ଏହି ଦେହ, ଇନ୍ଦ୍ରିୟ, ମନ ହିଁ ମୁଁ (ଆତ୍ମା) । ଏହି ଭ୍ରାନ୍ତ ସ୍ୱରୂପ ନିର୍ଦ୍ଧାରଣ ହିଁ ହେଉଛି ଜୀବର ସମସ୍ତ ଦୁଃଖଗୁଡ଼ିକର କାରଣ ।

**ପ୍ରଶ୍ନ ୧୧୩– ଅଖଣ୍ଡାନନ୍ଦ କେମିତି ପ୍ରାପ୍ତ ହେବ ?**

ଉତ୍ତର – ଏହି ଆତ୍ମା ହେଉଛି ଅଖଣ୍ଡ ପୂର୍ଣ୍ଣ ଆନନ୍ଦ ସ୍ୱରୂପ । ଏହା ତୁମର ସ୍ୱରୂପ । ଆନନ୍ଦ, ପଦାର୍ଥଗୁଡ଼ିକରୁ ପ୍ରାପ୍ତ ହେଉଥିବା ବୃତ୍ତି ଅଥବା ଅବସ୍ଥା ବିଶେଷ ନୁହେଁ । ଦୁଃଖର ନିବାରଣ ଆମର ଲକ୍ଷ୍ୟ । ଆନନ୍ଦକୁ ପ୍ରାପ୍ତି କରିବାର ନାହିଁ । କାରଣ ତୁମର ସ୍ୱରୂପ ହେଉଛି ଆନନ୍ଦ । ଆନନ୍ଦକୁ ନୂଆ ଭାବରେ ପାଇବାର ନାହିଁ । ଯାହା କିଛି କରିବାକୁ ଅଛି, ତାହା ଦୁଃଖ ନିବାରଣ ପାଇଁ କରିବାକୁ ପଡ଼ିବ । ଆନନ୍ଦ ଯଦି ନୂଆ କରି ପାଇବା ବସ୍ତୁ ହେବ, ତେବେ ତାହା ନିତ୍ୟ ହେବ ନାହିଁ । ନିତ୍ୟ ତ ଶାଶ୍ୱତ, ଏବେ ବିନା ଚେଷ୍ଟାରେ ବି ରହିଛି 'ସହଜ ସୁଖରାଶି' ।

ଆନନ୍ଦର ଇଚ୍ଛା, ଅପୂର୍ଣ୍ଣତା ଭାବ ଯୋଗୁ ହୋଇଥାଏ । ତୁମେ ନିରନ୍ତର ଆନନ୍ଦ ସ୍ୱରୂପ । ଗହନ ନିଦ୍ରାରେ ତୁମେ ସାନନ୍ଦରେ ଅଛ ଯଦି ବର୍ତ୍ତମାନ ତୁମେ ସେପରି ନୁହଁ କାହିଁକି ? ସେହି ଏବଂ ଏହି ଅବସ୍ଥା ମଧ୍ୟରେ କେଉଁ ବାଧା ସୃଷ୍ଟି ହୋଇଗଲା ? ସେହି ବାଧା ଦେହାଭିମାନର, ଦେହ ଅହଂକାରର । ତାହାର ମୂଳକୁ ଖୋଜ ଏବଂ ଜାଣିନିଅ ଯେ, ତୁମେ ହେଉଛ ଆନନ୍ଦ ।

ନିଜେ ଆନନ୍ଦ ସ୍ୱରୂପ ହୋଇ ଆନନ୍ଦର ଇଚ୍ଛା ରଖିବା ଏହା ଜୀବର ଅଜ୍ଞାନତା ଯୋଗୁ ହେଉଅଛି । ଜୀବର ମୂଳକୁ ଖୋଜ, ସେଇଠି ତୁମେ ଆନନ୍ଦ ସ୍ୱରୂପ ଆତ୍ମା ଭାବରେ ନିଜକୁ ପାଇବ । ତୁମେ ଏଇଠି ବର୍ତ୍ତମାନ ହିଁ ଆନନ୍ଦ ସ୍ୱରୂପ ଅଟ । ଅହଂକାରର ସ୍ରୋତକୁ ଖୋଜିବ ତ ଆତ୍ମା ପ୍ରକଟ ହେବେ । କେବଳ ତାହାର ସତ୍ତା ହିଁ ରହିଛି, ସେ' ନିତ୍ୟ ଏବଂ ସେ' ହିଁ ତୁମେ । ମୁଁ ବର୍ତ୍ତମାନ ଆନନ୍ଦ ରହିତ– ଏହି ଭ୍ରାନ୍ତିକୁ ତତ୍‌କ୍ଷଣାତ୍ ନିବାରଣ କର, ତୁମେ ନିଜକୁ ବର୍ତ୍ତମାନ ଏଠାରେ, ବିନା କିଛି ସାଧନରେ ଆନନ୍ଦ ସ୍ୱରୂପ ଭାବରେ ପାଇବ ।

**ପ୍ରଶ୍ନ ୧୧୪– ଜ୍ଞାନୀ ଏବଂ ଅଜ୍ଞାନୀଙ୍କ ଜୀବନ ଚରିତ୍ରରେ ପ୍ରଭେଦ କ'ଣ ?**

**ଉତ୍ତର** – ଆଚରଣରେ ଜ୍ଞାନୀ, ଅଜ୍ଞାନୀ ଉଭୟ ସମାନ, ପାର୍ଥକ୍ୟ ରହିଛି ସେମାନଙ୍କ ଦୃଷ୍ଟିକୋଣରେ । ଅଜ୍ଞାନୀ ଦେହ, ଇନ୍ଦ୍ରିୟର କର୍ମଗୁଡ଼ିକୁ ନିଜର ବୋଲି ମାନି ବସିରହିଛି । ଯେତେବେଳେ କି ଜ୍ଞାନୀର ଅହଂକାର, କର୍ତ୍ତା–ଭୋକ୍ତା ପଣିଆର କ୍ଷୟ ହୋଇସାରିଛି ଏବଂ ସେ ଏହି ବା ସେହି ଦେହଠାରୁ ଅଥବା ଏହି ଘଟଣା ବା ସେହି ଘଟଣାଦିରୁ ନିଜକୁ ମୁକ୍ତ ରଖିଥାଏ ।

ଜ୍ଞାନୀର ମନ ବନ୍ଧ୍ୟା ଭୂମି ଭଳି ହୋଇଥିବାରୁ ସେ କର୍ମବୀଜକୁ ଗ୍ରହଣ କରନ୍ତି ନାହିଁ । ସେଥିପାଇଁ ଜ୍ଞାନୀଙ୍କ ଦ୍ୱାରା ହେଉଥିବା କର୍ମ ନିର୍ବୀଜ ହୋଇଥାଏ । ବାସ୍ତବରେ ସେ ସ୍ୱୟଂ ଅକର୍ତ୍ତା–ଅଭୋକ୍ତା ହିଁ ହୋଇଥାନ୍ତି କିନ୍ତୁ ଅଜ୍ଞାନୀର ଦୃଷ୍ଟିରେ ସେ କର୍ମ କରୁଥିବା ଏବଂ ଫଳ ଭୋଗୁଥିବା ଭଳି ମନେ ହୋଇଥାଏ ।

ଜ୍ଞାନୀଙ୍କୁ ଖାଉଥିବାର, ଚାଲୁଥିବାର, ଶୋଉଥିବାର, ଜାଗ୍ରତ ହେଉଥିବାର, କଥା କହୁଥିବାର, କାମ କରୁଥିବାର ଦେଖି ତାଙ୍କୁ କ୍ରିୟାଶୀଳ ବୋଲି ଜାଣିବା ଉଚିତ ନୁହେଁ । ସେ ନିଜେ ସେହି କ୍ରିୟାଗୁଡ଼ିକ ସମ୍ବନ୍ଧରେ ଅନଭିଜ୍ଞ ରହିଥାନ୍ତି । ଅନ୍ୟ ଲୋକ ତାଙ୍କୁ କ୍ରିୟାରତ ଭାବରେ ଦେଖିଥାନ୍ତି । କିନ୍ତୁ ସେ ସବୁ କ୍ରିୟାଗୁଡ଼ିକୁ ଦେହସଂଘାତର ବୋଲି ଜାଣି ରହିଥାନ୍ତି, ଆତ୍ମାର ନୁହେଁ । ଜ୍ଞାନୀ ହିଁ ବ୍ରହ୍ମ–ବାସ୍ ! ଏତିକି ଜାଣ ।

ଜ୍ଞାନୀ ଜୀବିତାବସ୍ଥାରେ ହିଁ ମୁକ୍ତିର ଅନୁଭବ କରିନିଅନ୍ତି । ପୁନଶ୍ଚ ତାଙ୍କର ଜୀବନ ଲୀଳାର କୌଣସି ମହତ୍ତ୍ୱ ନାହିଁ ଯେ, ସେ କିପରି କେଉଁଠି ଏବଂ କେବେ ନିଜ ଶରୀରକୁ ତ୍ୟାଗ କରୁଛନ୍ତି ବା ଜୀବନ ପର୍ଯ୍ୟନ୍ତ କେଉଁ କର୍ମ ପ୍ରତି ରୁଚି ରଖୁଛନ୍ତି । କୌଣସି ଭୟଙ୍କର କଷ୍ଟରେ ପୀଡ଼ିତ ହୋଇ ସେ ପ୍ରାଣ ଛାଡ଼ିଲା ପରି ମନେ ହୋଇଥାନ୍ତି ତ କୌଣସି ଦୁର୍ଘଟଣା ଦ୍ୱାରା ଶରୀର ତ୍ୟାଗ କରୁଥିବାର ଦେଖାଯାଇଥାଏ । ତଥାପି କେହି କେହି ମୃତ୍ୟୁ ପୂର୍ବରୁ ଶରୀର ଠାରୁ ଗୁପ୍ତ ହୋଇଯାନ୍ତି । ଏହିଭଳି କଷ୍ଟ ଗୁଡ଼ିକର ଆଭାସ ଅଜ୍ଞାନୀ ଦର୍ଶକକୁ ହୋଇଥାଏ, ଜ୍ଞାନୀକୁ ନୁହେଁ ।

ଅଜ୍ଞାନୀ କଞ୍ଚା ନଡ଼ିଆ ଭଳି ହୋଇଥିଲା ବେଳେ ଜ୍ଞାନୀଙ୍କ ଜୀବନ ଶୁଖିଲା ନଡ଼ିଆ ଭଳି ଅସଂଗ ରହିଥାଏ । ତାଙ୍କୁ ଦେହର କୌଣସି ପ୍ରକାରର ବ୍ୟବହାର, ଅବସ୍ଥା ପ୍ରଭାବିତ କରିପାରେ ନାହିଁ ।

**ପ୍ରଶ୍ନ ୧୧୫– ଜ୍ଞାନୀଙ୍କର ମନୋଦଶା କେମିତି ହୋଇଥାଏ ?**

**ଉତ୍ତର** – ଦେହାତ୍ମ ବୁଦ୍ଧି ଯେପର୍ଯ୍ୟନ୍ତ ଥାଏ ସେପର୍ଯ୍ୟନ୍ତ ସେ' ଅଜ୍ଞାନ । ଯେତେବେଳେ ଦେହାତ୍ମବୋଧ ଉପରକୁ ଯାଏ ସେତେବେଳେ ମନୁଷ୍ୟ ଜ୍ଞାନୀ ହୋଇଯାଏ ।

ସେହି ଦେହାତ୍ମବୋଧ ବିନା ନା କର୍ତ୍ତୃତ୍ୱ ଅଛି ନା କର୍ତ୍ତା ? ଏଣୁ ଜ୍ଞାନୀଙ୍କର ଦେହଭାବ, କର୍ତ୍ତୃତ୍ୱ ଭାବ ନଷ୍ଟ ହୋଇଗଲାପରେ ଜ୍ଞାନୀଙ୍କର କୌଣସି କର୍ମ ନଥାଏ । ଏହା ତାଙ୍କର ଅନୁଭବ । ନଚେତ୍ ସେ ଜ୍ଞାନୀ ନୁହନ୍ତି ।

ଅଜ୍ଞାନୀ, ଜ୍ଞାନୀର ଦେହ କ୍ରିୟାଗୁଡ଼ିକୁ ଦେଖି ତାଙ୍କୁ ତାହା ସହିତ ଯୋଡ଼ି ଦିଅନ୍ତି । ଯେତେବେଳେ କି ଜ୍ଞାନୀ ନିଜ ଶରୀର ସହିତ ଜଗତକୁ ନିଜ ଠାରୁ ଅଲଗା ଭାବରେ ମାନିଥାନ୍ତି । ଅଜ୍ଞାନୀ, ଜ୍ଞାନୀକୁ କର୍ମ କରୁଥିବାର ଦେଖିଥାଏ, କାରଣ ଅଜ୍ଞାନ, ଜ୍ଞାନୀଙ୍କ ଦେହ ସକ୍ରିୟ ଥିବାର ଦେଖିଥାଏ ।

**ପ୍ରଶ୍ନ ୧୧୬– ଯେତେବେଳେ ସମସ୍ତେ ଏକ ଆତ୍ମା, ସେତେବେଳେ ଜ୍ଞାନୀର ଉପଯୋଗିତା କ'ଣ ?**

ଉତ୍ତର – ଜ୍ଞାନୀଙ୍କର ଉପଯୋଗିତା ହେଉଛି ଯେ, ସେ ଅଜ୍ଞାନୀମାନଙ୍କୁ ଏହା ସ୍ମରଣ କରାଇ ଦେବେ ଯେ –

"ଯାକେ ତୁ ଖୋଜନ ଫିରେ ସୋ ତୁ ଆପ ହି ବ୍ରହ୍ମ"

ତୁମେ ସାକ୍ଷାତ୍ ଆତ୍ମା । ସାକ୍ଷାତ୍କାର ପାଇଁ, ତୁମ ପାଇଁ ତୁମର କିଛି କରିବା ଦରକାର ନାହିଁ । ତୁମେ ସାକ୍ଷାତ୍କାର କରିନାହଁ – ଏହି ଭ୍ରାନ୍ତିକୁ ଦୂର କରିବା ପାଇଁ ଜ୍ଞାନୀର ଜଗତରେ ଉପଯୋଗିତା ରହିଛି । ଜ୍ଞାନୀ କାହାକୁ ବି ଅଜ୍ଞାନୀ ବୋଲି ମାନନ୍ତି ନାହିଁ । ତାଙ୍କ ଦୃଷ୍ଟିରେ ସମସ୍ତେ ମୁକ୍ତ ଏବଂ ଜ୍ଞାନୀ ।

**ପ୍ରଶ୍ନ ୧୧୭– କ'ଣ ଜ୍ଞାନୀଙ୍କ ଦ୍ୱାରା କର୍ମ ହୋଇପାରେ ?**

ଉତ୍ତର – ଆତ୍ମଜ୍ଞାନୀ ହିଁ ଉତ୍ତମ କର୍ମଯୋଗୀ ହୋଇପାରନ୍ତି । ଯେତେବେଳେ କର୍ତ୍ତାପଣିଆର ଭାବ ନ ରହେ, ସେତେବେଳେ ଦେଖ ଯେ, ଏହି କର୍ମ କାହାର ? କର୍ମ କରିବା ଉଚିତ ନା ନ କରିବା ଉଚିତ– ଏହି ବିବାଦ ଭିତରେ ପଡ଼ନାହିଁ । କର୍ମକୁ ନିଜେ ହେବାକୁ ଦିଅ । ପ୍ରକୃତି ଦ୍ୱାରା ନିଜକୁ କର୍ତ୍ତା କରି ଦିଅନାହିଁ । ଶଙ୍କର ଅକର୍ମର କଥା କହିଛନ୍ତି କିନ୍ତୁ ନିଜେ ଭାଷ୍ୟ ଲେଖିଥିଲେ । ବିଭିନ୍ନ ସ୍ଥାନକୁ ଯାଇ ଶାସ୍ତ୍ରାର୍ଥ ଦ୍ୱାରା ପଣ୍ଡିତମାନଙ୍କୁ ପରାସ୍ତ କରିଥିଲେ । ଯେପର୍ଯ୍ୟନ୍ତ କର୍ତ୍ତାପଣିଆର ଭାବ ରହିଛି, ସେପର୍ଯ୍ୟନ୍ତ ତାକୁ ନିଜର କର୍ମଗୁଡ଼ିକର ଫଳ ଭୋଗିବାକୁ ହିଁ ପଡ଼ିବ । ଯଦି ସେ ନିଜକୁ କର୍ତ୍ତା ବୋଲି ମାନୁନାହିଁ, ତେବେ ତାଙ୍କ ପାଇଁ କୌଣସି କର୍ମ ନାହିଁ ।

କର୍ମକୁ କେବେ ତ୍ୟାଗ କରନାହିଁ, କର୍ତ୍ତାପଣିଆର ଭାବକୁ ତ୍ୟାଗ କର । କର୍ମ ସ୍ୱତଃ ପ୍ରକୃତିର ନିୟମ ଅନୁସାରେ ଶ୍ୱାସନେବା, ରକ୍ତ ସଞ୍ଚାଳନ ହେବା, ମଳମୂତ୍ର ତ୍ୟାଗ କରିବା, ଭୋଜନ ପରିପାକ ହେଲା ଭଳି ହୋଇଚାଲିଥିବ । ଅଥବା କର୍ମ

ତୁମ ଠାରୁ ଚାଲିଯିବ । ତୁମେ ତାକୁ ଛାଡିବାର ଅହଂକାର କେବେ କରନାହିଁ । ଯଦି ତୁମର ପ୍ରାରବ୍ଧ ପ୍ରବୃତ୍ତି ପ୍ରଧାନ, ତେବେ ସେହି କର୍ମ, ଯାହା ଜନ୍ମହେବା ପୂର୍ବରୁ ଜୀବ ପାଇଁ ନିଶ୍ଚିତ ହୋଇସାରିଛି, ଅବଶ୍ୟ ସେଗୁଡ଼ିକ ତୁମ ଦ୍ୱାରା ହେବ, ତୁମେ ତାକୁ ନ କରିବାକୁ ଚାହିଁଲେ ବି ତୁମର ଜିଦ୍ କିଛି କରିପାରିବ ନାହିଁ । ଯଦି ତୁମର ପ୍ରାରବ୍ଧରେ କର୍ମ ପ୍ରବୃତ୍ତି ନାହିଁ, ଶୁକଦେବ, ଭରତ, ଜ୍ଞାନଦେବଙ୍କ ଭଳି ତ ତୁମେ ଲକ୍ଷେ ଥର ଚାହିଁଲେ ବି ତୁମ ଦ୍ୱାରା କର୍ମ ପ୍ରବୃତ୍ତି ହେବନାହିଁ । ଜନକ, ରାମ, କୃଷ୍ଣ, ଅର୍ଜୁନ, ଶୁକଦେବ ଇତ୍ୟାଦି ଅହଂକାର ରହିତ ହୋଇ କର୍ମକରି ଚାଲିଥିଲେ । ଯଶ ପାଇଁ କର୍ମ କରୁଥିବା ଲୋକ ଅଜ୍ଞାନୀ ତଥା ଲୋକ କଲ୍ୟାଣ ପାଇଁ ନିଃସ୍ୱାର୍ଥ କର୍ମ କରୁଥିବା ଲୋକ ଜ୍ଞାନୀ ।

କର୍ମଗୁଡ଼ିକୁ କରୁଥିଲେ ବନ୍ଧନ ହୁଏ ନାହିଁ । ବନ୍ଧନର କାରଣ ହେଉଛି ମିଥ୍ୟା କର୍ତ୍ତୃତ୍ୱାଭିମାନ ଯେ, 'ମୁଁ ହିଁ କର୍ତ୍ତା ।' ଏହିଭଳି ସଂକଳ୍ପଗୁଡ଼ିକୁ ତ୍ୟାଗ କର ତଥା ତୁମର ହସ୍ତକ୍ଷେପ ବିନା ଶରୀର, ଇନ୍ଦ୍ରିୟ, ମନ ଇତ୍ୟାଦି ଦ୍ୱାରା କାର୍ଯ୍ୟ ହେବାକୁ ଦିଅ । କର୍ତ୍ତାପଣିଆର ଅଭିମାନ ଛାଡ଼ି କର୍ମ କଲେ ଫଳ ସାକ୍ଷୀକୁ ପ୍ରଭାବିତ କରିବ ନାହିଁ, ଏହା ହେଉଛି ପୁରୁଷାର୍ଥ ଏବଂ ବୀରତ୍ୱ ।

ଆତ୍ମଜ୍ଞାନ ପ୍ରାପ୍ତି ପାଇଁ କର୍ମ ବାଧା ସୃଷ୍ଟି କରେ ନାହିଁ । କର୍ତ୍ତାର ମିଥ୍ୟା ଦେହାଭିମାନ ହିଁ ଏଥିପାଇଁ ବାଧକ । ଏହି ମିଥ୍ୟା ଦେହାଭିମାନ ଠାରୁ ମୁକ୍ତି ପାଇବାକୁ ହେବ । କର୍ତ୍ତା କିଏ ? ଯେ କାର୍ଯ୍ୟ କରୁଛି ନା କରାଉଛି ? ସେ ହେଉଛି ମନ । ତୁମେ ମନ ନୁହଁ, ସେଥିପାଇଁ କର୍ତ୍ତା ବି ନୁହଁ । କାର୍ଯ୍ୟ ତୁମ ସମକ୍ଷରେ, ତୁମର ଉପସ୍ଥିତିରେ ତୁମ ସାକ୍ଷୀତ୍ୱରେ ହେଉଅଛି ।

ମନୁଷ୍ୟ ନିଜକୁ କର୍ତ୍ତା ବୋଲି ମାନେ ଏହା ହେଉଛି ତା'ର ଭୁଲ୍ । ଯେମିତି ପଥରର ମୂର୍ତ୍ତି ନିଜ କାନ୍ଧରେ ଭାର ନେଲା ଭଳି ପ୍ରତୀତ ହୋଇଥାଏ ବା ହନୁମାନ, କୃଷ୍ଣ ଗନ୍ଧମାର୍ଦ୍ଦନ, ଗୋବର୍ଦ୍ଧନାଦି ପର୍ବତକୁ ନିଜ ହାତରେ ଉଠାଇଲା ଭଳି ମନେ ହୋଇଥାଏ । ବର୍ତ୍ତମାନ ଏଠାରେ ବିଚାରର ଆବଶ୍ୟକତା ଅଛି ଯେ, ମୂର୍ତ୍ତି, ମନ୍ଦିର, ସ୍ତୂପ ତ ଭୂମି ଉପରେ ଛିଡ଼ା ହୋଇଛି, ତାହା ନିଅଁ ମାଟିରେ ରହିଛି । ସେହି ମୂର୍ତ୍ତି, ସେହି ପଥର, ମନ୍ଦିର, ସ୍ତୂପର ଅଂଶ ବିଶେଷ ମାତ୍ର । ଅଜ୍ଞାନତା ଯୋଗୁ ସେହି ମୂର୍ତ୍ତି, ମନ୍ଦିର, ପଥର ନିଅଁ ଠାରୁ ଅଲଗା ଭାର ଉଠାଇଲା ଭଳି ପ୍ରତୀତ ହେଉଅଛି ଅଥବା ପୃଥିବୀ ଉପରେ ରଖା ହୋଇଥିବା ଟେବୁଲ ଉପରେ ଥିବା ଏଟଲାସ ପୃଥିବୀକୁ ଉଠାଇଲା ଭଳି ହିଁ ମନୁଷ୍ୟ ନିଜେ କର୍ତ୍ତାର ମିଥ୍ୟା ଅଭିମାନ କରୁଛି । ଏହା କ'ଣ ହାସ୍ୟାସ୍ପଦ ନୁହେଁ ଯେ ମୋଟର, ଟ୍ରେନ୍, ନୌକାରେ ବସିଥିବା ବ୍ୟକ୍ତି ନିଜ ମୁଣ୍ଡ ଉପରେ ରଖିଥିବା ଗଣ୍ଠିଲିକୁ ତଳେ ରଖୁନାହିଁ, ଏହି ବିଚାର ଯୋଗୁ

ଯେ, ମୁଁ ମୋର ଗଣ୍ଠିଲିର ବୋଝରୁ ଏହି ପୃଥିବୀ ଉପରେ, ନୌକା ଉପରେ ରଖିବି ନାହିଁ, ନହେଲେ ନାଆ ବୁଡ଼ିଯିବ ।

'ମୁଁ କର୍ତ୍ତା-ମୁଁ ଭୋକ୍ତା'- ଏହି ମୁଁ କିଏ ? ଏହାର ମୂଳକୁ ଖୋଜିଲେ ଶୁଦ୍ଧ ଚୈତନ୍ୟ ନିଷ୍କ୍ରିୟ ଅସଙ୍ଗାତ୍ମା ହିଁ ଅନୁଭବ ଭାବରେ, ମୁଁ ଭାବରେ ପ୍ରାପ୍ତ ହୋଇଥାଏ । ତେଣୁ କର୍ମ ଏବଂ ଫଳ ଉପରେ ଆନନ୍ଦ ସ୍ୱରୂପର ଉପଲବ୍ଧି ହୋଇଥାଏ । ତାପରେ କୌଣସି ପ୍ରୟାସର ଅପେକ୍ଷା ରହେନା । କାରଣ, ଆତ୍ମା ହେଉଛି ସର୍ବଦା ପୂର୍ଣ୍ଣାନନ୍ଦ, କିଛି ପାଇବାର ଶେଷ ରହେନାହିଁ ।

**ପ୍ରଶ୍ନ ୧୧୮– ଆତ୍ମା, ପରମାତ୍ମା ପର୍ଯ୍ୟନ୍ତ ପହଞ୍ଚିବା ପାଇଁ କେଉଁ ପ୍ରକାର ଚେଷ୍ଟା ଆବଶ୍ୟକ ?**

**ଉତ୍ତର –** ଆତ୍ମାକୁ ପରମଧାମ ପର୍ଯ୍ୟନ୍ତ ପହଞ୍ଚିବାକୁ ପଡ଼େନାହିଁ । କ'ଣ ଏମିତି କୌଣସି ମୁହୂର୍ତ୍ତ ଅଛି, ଯେତେବେଳେ କି ଆତ୍ମା ନାହିଁ ? ଏହା ନୂଆ ଜିନିଷ ନୁହେଁ । ତୁମେ ସ୍ୱୟଂ ହିଁ ଆତ୍ମା, ପରମଧାମ ଅଟ । ଯାହା ନୂଆ, ତାହା ସ୍ଥାୟୀ ହୋଇପାରିବ ନାହିଁ । ଯାହା ସତ୍ୟ, ତାହା ସନାତନ । ଆତ୍ମା ପର୍ଯ୍ୟନ୍ତ ପହଞ୍ଚିବା ପାଇଁ ଭୂଇଁ ମଝିରେ ବସି ଧ୍ୟାନ କରିବାକୁ ପଡ଼େ ନାହିଁ । ଭୂଇଁ ମଧ୍ୟରେ ଧ୍ୟାନ କରିବା କଥା ତ କେବଳ ଏକାଗ୍ରତା ପାଇଁ କୁହାଯାଇଛି ।

ଆତ୍ମା କିଛି ଅନୁଭବ କଲାଭଳି ନୂଆ ବସ୍ତୁ ନୁହେଁ । ଏହା ହେଉଛି ତୁମର ନିଜେ ହେବା । ଏହା ସେହି ନିତ୍ୟ, ଶୁଦ୍ଧ, ବୁଦ୍ଧ, ମୁକ୍ତ ଅବସ୍ଥା, ଯାହାକୁ କେବେହେଲେ ହଜେଇ ଦିଆଯାଇପାରିବ ନାହିଁ । ଏହାର ବିପରୀତରେ ମନୁଷ୍ୟକୁ ନିଜର ଅଜ୍ଞାନତାକୁ ହିଁ ତ୍ୟାଗ କରିବାକୁ ହେବ । ବାସ୍, ଏତିକି କରିବାକୁ ହେବ ।

**ପ୍ରଶ୍ନ ୧୧୯– ଈଶ୍ୱର ଦର୍ଶନର ରହସ୍ୟ କ'ଣ ?**

**ଉତ୍ତର –** ଈଶ୍ୱରଙ୍କ ରୂପରେ ଧ୍ୟାନ ଏବଂ ଦର୍ଶନ ହେଉଛି ଭକ୍ତ ମନର କଳ୍ପିତ ମୂର୍ତ୍ତି, ତାହା ଯଥାର୍ଥରେ ସତ୍ୟ ଏବଂ ଜୀବର କଲ୍ୟାଣ ପାଇଁ ଅନ୍ତିମ ଅବସ୍ଥା ନୁହେଁ । ଭକ୍ତର ମନ ଦ୍ୱାରା ମାନସିକ ସ୍ତରରେ ନିର୍ଦ୍ଧାରିତ ମୂର୍ତ୍ତିର ଧ୍ୟାନ ମନର ଏକାଗ୍ରତା ଏବଂ ଅନ୍ତର୍ମୁଖ ଅବସ୍ଥାରେ ହୋଇଥାଏ । ଏହା ସ୍ୱପ୍ନାବସ୍ଥା ସହିତ ସମାନ । ସ୍ୱପ୍ନାବସ୍ଥାର କୌଣସି ଲାଭ କ୍ଷତି ଜାଗ୍ରତ ଅବସ୍ଥାରେ ମିଳେ ନାହିଁ । ସେହିପରି ଧ୍ୟାନରେ ପାଇଥିବା ଦର୍ଶନ, ଜ୍ଞାନ ଅବସ୍ଥାକୁ ଆସିଗଲେ ତାହା ସ୍ୱପ୍ନ ପରି ମିଥ୍ୟା ହୋଇଯାଏ । ଈଶ୍ୱରଦର୍ଶନ ପରେ ଆତ୍ମ ବିଚାର ଆରମ୍ଭ ହୁଏ, ଯାହାର ପରିଣାମ ହେଉଛି ଆତ୍ମ ସାକ୍ଷାତ୍କାର । ବିଚାର ହେଉଛି ନିଜ କଲ୍ୟାଣର ଅନ୍ତିମ ମାର୍ଗ ।

ଯଦି ଭକ୍ତମାନଙ୍କର ଈଶ୍ୱର ଦର୍ଶନ ତୁମ ଆତ୍ମା ଭଳି ଅସ୍ତିତ୍ୱବାନ୍ ହୋଇଥାନ୍ତା, ତେବେ ସୁଷୁପ୍ତି ଅବସ୍ଥାରେ ବି ତୁମ ଭଳି ସତ୍ତା ଧାରଣ କରି ବିଦ୍ୟମାନ ରହୁଥାନ୍ତା । ଈଶ୍ୱରଙ୍କ ଏହି ବିଚାର ଏବଂ ଦର୍ଶନ, ଧ୍ୟାନ ଇତ୍ୟାଦି ଜାଗ୍ରତରେ ହିଁ ହୋଇଥାଏ, ସୁଷୁପ୍ତିରେ ନୁହେଁ ।

ଆଶ୍ଚର୍ଯ୍ୟର କଥା । ଭକ୍ତ ସମସ୍ତଙ୍କ ଭିତରେ ଈଶ୍ୱରଙ୍କୁ ମାନିଥାଏ ଏବଂ ଦେଖିଥାଏ, କିନ୍ତୁ ନିଜ ଭିତରେ ନୁହେଁ । ଈଶ୍ୱର ଯେତେବେଳେ ନିତ୍ୟ, ବ୍ୟାପକ ଏବଂ ପୂର୍ଣ୍ଣ ତେବେ କ'ଣ ସେ ତୁମ ରୂପରେ ଏଇଠି ଏବଂ ଏବେ ନାହାନ୍ତି ? ଯଦି ସବୁ କିଛି ଈଶ୍ୱର ତୁମେ କଣ ସେହି ସବୁ ଭିତରେ ନାହିଁ ? ଯେତେବେଳେ ରାମ, କୃଷ୍ଣ ଇତ୍ୟାଦି ସବୁ ହେଉଛନ୍ତି ଈଶ୍ୱର ସେତେବେଳେ ତ ତୁମେ ବି ଈଶ୍ୱର ଏଥିରେ କ'ଣ ସନ୍ଦେହ ଅଛି ? ମାତ୍ର ତୁମେ ଆତ୍ମା ହେବାରୁ କେମିତି ରକ୍ଷା ପାଇପାରିବ, ଯେହେତୁ ଆତ୍ମା ହେଉଛି ଅଖଣ୍ଡ ଏବଂ ସର୍ବବ୍ୟାପକ ?

ଯେପର୍ଯ୍ୟନ୍ତ ତୁମେ ନିଜକୁ ଜୀବ ବୋଲି ମାନୁଛ, ସେପର୍ଯ୍ୟନ୍ତ ତୁମେ ନିଜ ଠାରୁ ଅଲଗା କୌଣସି ଈଶ୍ୱରଙ୍କ ସତ୍ତାକୁ ମାନି ଚାଲିଛ ।

ସାକାର ହେଉ ବା ନିରାକାର, ଈଶ୍ୱରଙ୍କ ପୂଜା କଲେ ଈଶ୍ୱର ଗୁରୁ ରୂପରେ ପ୍ରକଟ ହୋଇଥାନ୍ତି । ପୁନଶ୍ଚ ଗୁରୁଙ୍କ ସେବା କଲେ ସେ ଆତ୍ମା ରୂପରେ, ଅଭେଦ ରୂପରେ, 'ସୋଽହଂ' ରୂପରେ ପ୍ରକଟ ହୋଇଯାନ୍ତି ।

ଏହି ସବୁ 'ବାସୁଦେବ', 'ବ୍ରହ୍ମ', 'ସୀତାରାମ' ଏହି ବୈଦିକ ସତ୍ୟ ସିଦ୍ଧାନ୍ତକୁ ଆମେ ଭୁଲିଯାଇଛୁ । ସେଥିପାଇଁ ଆମେ ପରମାତ୍ମାଙ୍କ ସାଙ୍ଗରେ ତାଦାତ୍ମ୍ୟ କରିପାରୁନାହୁଁ, ଯାହା ବାସ୍ତବ ଏବଂ ଯାହା ଆମେ ନୁହନ୍ତି, ସେହି ମିଥ୍ୟା ଶରୀରରେ ଆମେ ତାଦାତ୍ମ୍ୟ କରିବାରେ କେବେହେଲେ ସଂଶୟ କରିନାହୁଁ । ବିଚାର କର ଏବେ ଆମେ କେଉଁଠି ? କ'ଣ ପରମାତ୍ମାଙ୍କୁ ଛାଡ଼ି ଅଲଗା କୌଣସି ବସ୍ତୁ, ସ୍ଥାନ, କାଳରେ ଥାଇ ଆମେ ଏହା କହିବାର ଦୁଃସାହସ କରୁଛୁ ଯେ, 'ମୁଁ ତ ଦାସାନୁଦାସ', 'ମୁଁ ତ ଭକ୍ତ', 'ମୁଁ ଭଗବାନ ନୁହେଁ' । ସଂସାର ତଥା ଆମେ ସବୁ ହିଁ ଗୋଟିଏ ପରମାତ୍ମା । ଜ୍ଞାନ ନ ହେବା ଯାଏ ଏହି ଭେଦ-ଭାବ ଆମକୁ ଅଜ୍ଞାନ, ଭକ୍ତ ଏବଂ କର୍ମୀ କରି ରଖିଥାଏ ।

ଈଶ୍ୱର ଯଦି ସତ୍ୟ ହୋଇଥାନ୍ତେ ତେବେ ତୁମର ସୁଷୁପ୍ତି ଅବସ୍ଥାରେ କାହିଁକି ପ୍ରକଟ ହେଉନାହାନ୍ତି ? ତୁମେ ବର୍ତ୍ତମାନ ସେୟା ଯାହା ସୁଷୁପ୍ତି ଅବସ୍ଥାରେ ଥିଲ । ତୁମର ସତ୍ତାରେ କୌଣସି ନ୍ୟୂନାଧିକତା ହୋଇନାହିଁ ।

ପ୍ରତ୍ୟେକଙ୍କର ଏହି ବୋଧ ରହିଛି ଯେ 'ମୁଁ' ଅଛି । ଏହି ବୋଧକୁ ଭୁଲିଯାଇ ମନୁଷ୍ୟ ଈଶ୍ୱରଙ୍କୁ ଖୋଜିବା, ଈଶ୍ୱରଙ୍କୁ ଦର୍ଶନ କରିବାର ମିଥ୍ୟା ଚେଷ୍ଟାକରି 'ମୃଗ-କସ୍ତୁରୀ-ଖୋଜିବା' ଭଳି ଏଣେ ତେଣେ ଜଳ, ସ୍ଥଳ, ଆକାଶର ବିଭିନ୍ନ ସ୍ଥାନରେ ଖୋଜି ବୁଲୁଛି । ଭ୍ରୂମଧ୍ୟରେ ଈଶ୍ୱର ବିରାଜମାନ କହିବା ମୂଢତା । ଈଶ୍ୱର ହେଉଛନ୍ତି ସର୍ବବ୍ୟାପକ, ନିରାକାର । ଭ୍ରୂମଧ୍ୟରେ ଧ୍ୟାନ ମନକୁ ଏକାଗ୍ର କରିବାର ହେତୁ, ସେହିଠାରେ ଧ୍ୟାନ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ହଠଯୋଗ ଦ୍ୱାରା ମନ ନିରୋଧର ଏକ ସାଧନ ରହିଛି, କିନ୍ତୁ ଈଶ୍ୱର ପ୍ରାପ୍ତି ପାଇଁ ନାହିଁ ।

ମନୁଷ୍ୟ ଈଶ୍ୱରଙ୍କ ଆଗରେ ନମସ୍କାର କରିଦେଲେ, ଏୟା ଭାବିନିଏ ଯେ, ଈଶ୍ୱର ମୋର ପୂର୍ବର ସବୁ ପାପକୁ କ୍ଷମା କରିଦେଇ ମୋର ନମସ୍କାରକୁ ଗ୍ରହଣ କରିନେଲେ ତଥା ପୂର୍ବଭଳି ସେ ନିଜ ଜୀବନକୁ ପାପମୟ କରିବା ପାଇଁ ସ୍ୱାଧୀନ ହୋଇଗଲା । ମନୁଷ୍ୟର ପ୍ରତ୍ୟେକ କାର୍ଯ୍ୟ ଈଶ୍ୱରଙ୍କୁ ସମର୍ପଣ ପୂର୍ବକ କରିବା ଉଚିତ୍ । ମନକୁ ନିର୍ମଳ ରଖିବା ହିଁ ସାଷ୍ଟାଙ୍ଗ ଦଣ୍ଡବତ, ପ୍ରଣାମ ।

**ପ୍ରଶ୍ନ ୧୨୦– କଣ ବିନା ଗୃହ ତ୍ୟାଗରେ ମୋକ୍ଷ ହୋଇପାରିବ ?**

**ଉତ୍ତର –** ସଂସାର ହେଉଛି ତୁମ ମନର ପରିଣାମ । ନିଜ ମନକୁ ଜାଣ । ତା'ପରେ ସଂସାରକୁ ଦେଖ । ତୁମେ ଅନୁଭବ କରିବ ଯେ, ସଂସାର ଆତ୍ମା ଠାରୁ ଭିନ୍ନ ନୁହେଁ । ସଂସାର ବାହାରେ ନାହିଁ । ଜଗତର ବୋଧ, ଚୈତନ୍ୟ ଦ୍ୱାରା ହୋଇଥାଏ । ପ୍ରଥମତଃ କିଏ ଅଛି ? ଚୈତନ୍ୟ ସତ୍ତା ତୁମେ ଆତ୍ମା ନା ଉଦୟ ହେଉଥିବା ଚେତନତା ? ସେହିପରି ସଂସାର ହେଉଛି ଅହଂ(ମନ)ର ପରିଣାମ । ମନର ଉଦ୍‌ଗମ ସ୍ଥାନର ଅନୁସନ୍ଧାନ ହେଉଛି ଅନ୍ତିମ ଲକ୍ଷ୍ୟ, ସେ' ହିଁ ତୁମେ, ଆତ୍ମା । କୌଣସି ଦୂର ସ୍ଥାନକୁ ଯିବାର ଆବଶ୍ୟକତା ନାହିଁ ।

ତୁଏତ ଗୃହସ୍ଥାଶ୍ରମରେ ରହ, ସନ୍ନ୍ୟାସ ନେଇ ଜଙ୍ଗଲରେ ରୁହ, ତୁମର ମନ ତ ସାଙ୍ଗରେ ରହିବ । ଯଦି ତୁମେ ଗୃହସ୍ଥାଶ୍ରମ ପ୍ରତି ଅନାସକ୍ତ ହୋଇଯାଅ, ତେବେ ସେ' ପୁଣି ମୁଁ ସନ୍ନ୍ୟାସୀ ବୋଲି ଅଭିମାନ କରିବ । ତଥା ନିଜ ପରିବାର ସ୍ଥାନରେ ଶିଷ୍ୟ, ଘର ସ୍ଥାନରେ ଆଶ୍ରମ, ନଗର ସ୍ଥାନରେ ବନର ସଂକଳ୍ପ କରିବ କିନ୍ତୁ ମାନସିକ ଚିନ୍ତନ ତ ଚାଲିଥିବ । ନୂଆ ବାତାବରଣରେ ବେଶୀ ବାଧା, କଷ୍ଟ, ସଂକଳ୍ପ ହେବ । ବାଧା ହେଉଛି ମନର, ବାତାବରଣର ପରିବର୍ତ୍ତନ ଏଥିରେ ସହାୟକ ହେବ ନାହିଁ । ମନର ବାଧା ରହିଛି । ତାହାକୁ ଜିତିବାକୁ ହେବ ଜଙ୍ଗଲ ହେଉ ବା ଘର ହେଉ । ଯେତେବେଳେ ମନକୁ ଜିତିବାର ଅଛି, ତାକୁ ଏଇଠି, ଘରେ ବି ଜିତାଯାଇ ପାରିବ । ତୁମେ ବାତାବରଣକୁ ବଦଳାଅ ନାହିଁ । ସେହି ବାତାବରଣରେ ଅଭ୍ୟାସ କର ।

ସନ୍ଥ, ମହାତ୍ମାମାନଙ୍କର ଆଶ୍ରମକୁ ଯାଇ ଦେଖ ସେଇଠି କଣ ନାହିଁ । ସେଇଠି ସବୁ ଅଛି, ଯାହା ସଂସାରରେ ସାଂସାରିକ ଲୋକମାନଙ୍କ ଘରେ ଥାଏ । ତୁମେ ମୋ ପାଖକୁ ଆସିଛ । ଦେଖ ଏଇଠି କ'ଣ ନାହିଁ – କାର ଅଛି, ଫୋନ୍ ଅଛି, ଟି.ଭି ଅଛି, କୁଲର, ଫ୍ୟାନ୍, ପଲଙ୍କ, ଲୁଗା, ଅଳଂକାର ସବୁ ରହିଛି । ତୁମ ଘରର ବାତାବରଣ ଠାରୁ କ'ଣ ଏହା କିଛି ଅଲଗା ? ନିର୍ବିକଳ୍ପ ସମାଧି ଠାରୁ ସହଜ ସମାଧିକୁ ଆଚାର୍ଯ୍ୟ ଶଙ୍କର ଶ୍ରେଷ୍ଠ ବୋଲି କହିଛନ୍ତି ।

ତେଣୁ ନିଶ୍ଚୟ କର 'ମୁଁ ଦେହ ନୁହେଁ' । ଏହାକୁ ରେଚକ ବୋଲି ଜାଣ (ଶ୍ୱାସ ବାହାରକୁ ଯିବାକୁ ଯୋଗଶାସ୍ତ୍ରରେ ରେଚକ କୁହାଯାଏ)

'ମୁଁ କିଏ' ଏହି ବିଚାରକୁ ମନରେ ଧାରଣା କରିବାକୁ ପୂରକ କୁହାଯାଏ । ଯୋଗଶାସ୍ତ୍ରରେ ଶ୍ୱାସ ଭିତରକୁ ନେବାକୁ ପୂରକ କୁହାଯାଏ ।

ଯୋଗଶାସ୍ତ୍ରରେ ଶ୍ୱାସ ରୋକିବାକୁ କୁମ୍ଭକ କୁହାଯାଏ । ସହଜ ସମାଧି ପାଇଁ 'ସୋଽହମ୍', 'ମୁଁ ହିଁ ସେ' ଏହିଭଳି ଧାରଣକୁ ହିଁ କୁମ୍ଭକ କୁହାଯାଏ ।

ସୁଷୁପ୍ତି ଅବସ୍ଥାରେ ସଂସାର ଏବଂ ମନର ଅନୁଭୂତି ହୁଏ ନାହିଁ କେବଳ ଆନନ୍ଦର ସ୍ଥିତି ରହିଥାଏ । ଜାଗ୍ରତରେ ହିଁ ଏହି ଅହଂ ମିଥ୍ୟା 'ମୁଁ'ର ଉଦୟ ହେଉ ହେଉ ସଂସାରର ଉତ୍ପତ୍ତି ହୋଇଥାଏ । କେବଳ ମୁଁ'ର ଦେହ ହେବା ଭଳି ମିଥ୍ୟା ସଂକଳ୍ପ ଠାରୁ ଉପରକୁ ଯାଅ ଅର୍ଥାତ୍ ନିଜକୁ 'ମୁଁ ଦେହ' ଏହିଭଳି ମିଥ୍ୟା ଅଭିମାନ ଠାରୁ ବଞ୍ଚାଅ । ସଂସାର ଠାରୁ ବାହାରକୁ ପଳାଇବାର ଇଚ୍ଛା କରନାହିଁ । ତୁମେ ସଂସାର ବାହାରକୁ ଯାଇପାରିବ ନାହିଁ । ସଂସାର ହିଁ ମନ, ସେ ପଳାଇବାବାଲା ସଙ୍ଗରେ ରହିଥାଏ ।

'ଅହଂ ବ୍ରହ୍ମାସ୍ମି' ଏହି ଶ୍ରୁତି ମହାବାକ୍ୟର ତାତ୍ପର୍ଯ୍ୟ ସ୍ଥିତି ସହିତ ଜଡିତ, ଯେମିତି ଦେହ, ଜାତି, ନାମ, ପ୍ରତି ବୁଦ୍ଧିର ଭ୍ରାନ୍ତ ସ୍ଥିତି ହୋଇଯାଇଛି । ସେହିପରି ମୁଁ ହିଁ ବ୍ରହ୍ମ, ସୋଽହଂ, ଶିବୋଽହଂ ଇତ୍ୟାଦି ମନ୍ତ୍ର ଜପ କରିବାର କଥା ଉଠୁନି । ମନ୍ତ୍ର ଶୁଆ ଜପୁଛି, ଟେପ୍ ରେକର୍ଡ କରିପାରିଛି, ଗ୍ରନ୍ଥରେ ଲେଖାଯାଇଛି । ତେବେ କ'ଣ ଶୁଆ, ଟେପ୍ ରେକର୍ଡ, ଗ୍ରନ୍ଥର ମୁକ୍ତି ହୋଇପାରିବ ? କେବେ ନୁହେଁ । କେବଳ ଧାରାବାହିକ ଭାବରେ ଶ୍ୱାସ-ଶ୍ୱାସରେ ବା ମାଳାର ମଣି ମାଧ୍ୟମରେ ବ୍ରହ୍ମଙ୍କ ଜପ କରିବା ଦ୍ୱାରା କେହି ବ୍ରହ୍ମ ହୁଅନ୍ତି ନାହିଁ । ବ୍ରହ୍ମ ପର୍ଯ୍ୟନ୍ତ ପହଞ୍ଚିବାର ପ୍ରୟାସ ଏହିଭଳି କରନାହିଁ ଯେ, ବ୍ରହ୍ମ ତୁମ ଠାରୁ ଅନ୍ୟତ୍ର କେଉଁଠି ଦୂର ସ୍ଥାନରେ ଅଛନ୍ତି । ଅହଂବ୍ରହ୍ମାସ୍ମି, ଶିବୋଽହଂର ଭାବ ହେଉଛି ଯେ, ତୁମେ ସ୍ୱୟଂ ବ୍ରହ୍ମ । ସେ ତୁମର ଆତ୍ମା ଅର୍ଥାତ୍ ସେ' ହିଁ ତୁମେ । ବ୍ରହ୍ମ ଅନ୍ୟ କେଉଁଠି ଥିବା ତୁମ ଠାରୁ

ଭିନ୍ନ ସତ୍ତାର ନାମ ନୁହେଁ । ଏଣୁ ସେହି ନିଷ୍ଠାକୁ ପ୍ରାପ୍ତ କର । ଏଣେ-ତେଣେ କୁଆଡ଼େ ଯାଅ ନାହିଁ । ବ୍ରହ୍ମାକାର ବୃତ୍ତି ଅନ୍ୟ ମନର ଭ୍ରାନ୍ତି ଜନିତ ସଂସ୍କାରଗୁଡ଼ିକୁ ଦୂର କରିବାରେ ସହାୟକ ହୋଇଥାଏ ।

**ପ୍ରଶ୍ନ ୧୨୧– ଜ୍ଞାନୀଙ୍କର ସିଦ୍ଧି ପ୍ରାପ୍ତ ହୋଇଥାଏ ନା ନାହିଁ ?**

**ଉତ୍ତର** – ଆତ୍ମସିଦ୍ଧି ଜ୍ଞାନୀମାନଙ୍କୁ ପ୍ରାପ୍ତ ହୋଇଥାଏ । ଆତ୍ମା ଠାରୁ ବଳି କୌଣସି ଶ୍ରେଷ୍ଠସିଦ୍ଧି ନାହିଁ ଏବଂ ଜ୍ଞାନୀ ଅନ୍ୟମାନଙ୍କୁ ବରଦାନ ଦେବାରେ ବି ସମର୍ଥ ହୋଇଥାନ୍ତି । ସେ ଜିଜ୍ଞାସୁଙ୍କୁ ବି ଆତ୍ମସିଦ୍ଧିର ବରଦାନ ଦେବାରେ ସମର୍ଥ ହୋଇଥାନ୍ତି । ଯୋଗୀ, ତାନ୍ତ୍ରିକମାନଙ୍କର ଜପ, ଔଷଧ, ମାଧ୍ୟମରେ ପ୍ରାପ୍ତ ହୋଇଥିବା ସିଦ୍ଧି ନାଶବାନ ହୋଇଥାଏ । ସବୁ ସିଦ୍ଧି, ଯାଦୁଗୁଡ଼ିକର ସର୍କସରେ ଖେଳ ପ୍ରଦର୍ଶନ କରିବା ପାଇଁ ଅନ୍ୟ ଦର୍ଶକମାନଙ୍କର ଆବଶ୍ୟକତା ପଡ଼ିଥାଏ । ଏଥିରେ ଦ୍ୱୈତଭାବ ପ୍ରବଳମାତ୍ରାରେ ଥାଏ, ନିଜ ପ୍ରଶଂସାର ଭାବ ରହିଥାଏ । ନିଜ ଠାରୁ ବଡ ସିଦ୍ଧ ପୁରୁଷଙ୍କୁ ଦେଖିଲେ ଈର୍ଷା ଆସେ ଏବଂ ତାଙ୍କୁ ମାରିଦେବା ପର୍ଯ୍ୟନ୍ତ ବି ବିଚାର ହୋଇଥାଏ । ଏହା ଦ୍ୱାରା ଏୟା ପ୍ରମାଣିତ ହେଲା ଯେ, ସିଦ୍ଧିଗୁଡ଼ିକୁ ପ୍ରଦର୍ଶନ କରୁଥିବା ଲୋକମାନଙ୍କର ଜ୍ଞାନର ବିଶେଷ ଅଭାବ ରହିଥାଏ ।

ସିଦ୍ଧି ପାଇଁ ଇଚ୍ଛା ରଖୁଥିବା ବ୍ୟକ୍ତି କେବଳ ଜ୍ଞାନର ବିଚାର ଦ୍ୱାରା ସନ୍ତୁଷ୍ଟ ହୁଅନ୍ତି ନାହିଁ । ସେଥିପାଇଁ ସେମାନେ ସିଦ୍ଧିଗୁଡ଼ିକୁ ବି ପ୍ରାପ୍ତ କରିବାକୁ ଚାହିଁଥାନ୍ତି । ଆଗକୁ ଯାଇ ସିଦ୍ଧି ପାଇବା, ଚମତ୍କାରିତା ଦେଖାଇବା, ବରଦାନ ଦେବା ଇତ୍ୟାଦି ଜାଲରେ ସେମାନେ ଏମିତି ପଡିଥାନ୍ତି ଯେ, ଜ୍ଞାନର ପରମାନନ୍ଦକୁ ଉପେକ୍ଷା କରି କେବଳ ସିଦ୍ଧିଗୁଡ଼ିକ ପ୍ରତି ମହତ୍ତ୍ୱାକାଂକ୍ଷା କରିପାରନ୍ତି । ସେହି ଉଦ୍ଦେଶ୍ୟରେ ସେମାନେ ରାଜମାର୍ଗକୁ ଛାଡି ସଂକୀର୍ଣ୍ଣ କଣ୍ଟକମୟ ମାର୍ଗରେ ଯାଉଛନ୍ତି । ଯଦ୍ୱାରା ସେମାନଙ୍କର ପଥଭ୍ରଷ୍ଟ ହେବାର ସମ୍ଭାବନା ରହିଥାଏ ।

ଜ୍ଞାନୀମାନେ ସିଦ୍ଧିର ଚର୍ଚ୍ଚା, ସିଦ୍ଧିମାର୍ଗର ବିଚାର କରନ୍ତି ବି ନାହିଁ । ଯେତେବେଳେ ଲୋକ ବାସନା ନଷ୍ଟ ହୋଇଯାଏ, ସେତେବେଳେ ଜ୍ଞାନ ଦୃଢ ଏବଂ ଫଳଦାୟକ ହୋଇଥାଏ । ଏଣୁ ସିଦ୍ଧିଗୁଡ଼ିକ କୌଣସି ବିଚାରର ଯୋଗ୍ୟ ନୁହେଁ । କେବଳ ଜ୍ଞାନକୁ ହିଁ ଲକ୍ଷ୍ୟ କରିବାର ଅଛି ଏବଂ ତାହାକୁ ପ୍ରାପ୍ତ କରିବାର ଅଛି । ତା'ପରେ ସିଦ୍ଧିର ଆବଶ୍ୟକତା ଅନୁଭବ ହେଲେ ସାଧନ କର । ଯେଉଁମାନେ ଶକ୍ତି, ଗଣପତି ଇତ୍ୟାଦି ସିଦ୍ଧିଗୁଡ଼ିକ ସମ୍ବନ୍ଧରେ ଚର୍ଚ୍ଚା କରୁଛନ୍ତି, ତାହାକୁ ଶୁଣି ରସଗ୍ରହଣ କରିବାକୁ ଚାହୁଁଛନ୍ତି, ସେମାନେ ଆତ୍ମାର ସାକ୍ଷାତ୍କାର କରିନାହାନ୍ତି, ନଚେତ୍ ସେମାନଙ୍କର ସିଦ୍ଧି ବିଷୟରେ ଚର୍ଚ୍ଚା କରିବା ପାଇଁ ଆଗ୍ରହ ଆସନ୍ତା କାହିଁକି ? କେବଳ ଆତ୍ମାର

ସାକ୍ଷାତ୍କାର କରିବାକୁ ହେବ । ଆତ୍ମା ହୃଦୟରେ ଅଛି, ସ୍ୱୟଂ ହିଁ ହୃଦୟ । ଏୟା ସେୟା ଜାଣିବା ଅପେକ୍ଷା ସର୍ବଦା ଏହା ବିଚାର କର ଯେ, 'ମୁଁ କିଏ' ? କୋଟିଏ ଅନ୍ୟ ପ୍ରଶ୍ନ ପଚାରିବା ଏବଂ ବସ୍ତୁଜ୍ଞାନର ଇଚ୍ଛା ରଖିବା ଅପେକ୍ଷା ଆତ୍ମାକୁ ଜାଣିବାର ଅନ୍ୱେଷଣ କରିବା ଶ୍ରେଷ୍ଠ ।

ଆତ୍ମଭାବରେ ରହିବା ଅତି ସରଳ, ଯାହା ହିଁ ଆମେ, ତାହା ପାଇଁ କିଛି କଠିନ ସାଧନର ଆବଶ୍ୟକତା ନାହିଁ । କାରଣ ଆମେ ହିଁ ଆତ୍ମା । ଆତ୍ମା ବ୍ୟତୀତ ଅନ୍ୟ କିଛି ହେଲେ ନାହିଁ, ଅନ୍ୟ ସବୁ ହେଉଛି କଥା, ସାଧନ, କଳ୍ପନା । ଏଣୁ ଏବେ ଏବଂ ଏହିଠାରେ ଆତ୍ମା ହୋଇ ରହ । ବଣକୁ ପଳାଇବା, ଘର ଛାଡ଼ିବା, ଚାକିରୀ ଛାଡ଼ିବା ବା ଘର ବନ୍ଦ କରି ଇନ୍ଦ୍ରିୟ ଦ୍ୱାରଗୁଡ଼ିକୁ ବନ୍ଦ କରିବାର ଆବଶ୍ୟକତା ନାହିଁ । ନିଜର ଆବଶ୍ୟକ କର୍ତ୍ତବ୍ୟଗୁଡ଼ିକୁ ପାଳନ କରି ସ୍ୱୟଂକୁ କର୍ତ୍ତାଭାବରୁ ମୁକ୍ତ କରିନିଅ । ଆତ୍ମା ହିଁ ସାକ୍ଷୀ ଏବଂ ତାହା ହିଁ ତୁମେ ।

ଆମେ କେବଳ ଆତ୍ମା ଏହି କଥାକୁ ଯେତେଥର ଦୋହରା ଯାଇପାରିବ ସେତେ ଭଲ । ମୁକ୍ତି ପାଇଁ ବାସ୍ ଏଇ ଗୋଟିଏ ବିଚାର ଆବଶ୍ୟକ । ଆମେ ଆତ୍ମା, ଆତ୍ମା ବ୍ୟତୀତ ଅନ୍ୟ କିଛି ନୁହେଁ । କିନ୍ତୁ ଅଜ୍ଞାନତା ଯୋଗୁ ନିଜେ ନିଜକୁ ଦେହ ସଂଘାତ ବୋଲି ମାନିନେଇ ଦେହର ପ୍ରକାଶକାରୀ ସାକ୍ଷୀ, ଦ୍ରଷ୍ଟା, ଆତ୍ମାକୁ ଭୁଲିଯାଉଛୁ ଏବଂ ନିଜେ ନିଜକୁ ଦୃଶ୍ୟ ଦେହ, ଇନ୍ଦ୍ରିୟ ତଥା ଅନ୍ତଃକରଣ ସହିତ ମିଶାଇ କର୍ମର କର୍ତ୍ତା ଏବଂ ଫଳ ଭୋକ୍ତା, ଜନ୍ମ-ମୃତ୍ୟୁ ଯୁକ୍ତ ବୋଲି ମାନି ନେଉଛୁ । ନିଜକୁ ଭ୍ରାନ୍ତ କରନାହିଁ । 'ତୁମେ ହିଁ ସେ' ଏହା ଠାରୁ ଅଧିକ କିଛି ଉପଲବ୍ଧି କରିବାର ନାହିଁ । କେବଳ ଅସତ୍ୟ ନାମରୂପର ସଂସର୍ଗ ତ୍ୟାଗ କରିବାକୁ ହେବ । ଦେହର ସୀମା ତୁମର ସୀମା ନୁହେଁ, ତୁମେ ଅନନ୍ତ । ଅଜ୍ଞାନ ଯୋଗୁ ଆମେ ନିଜକୁ ଅନାତ୍ମ ଦେହ ସହିତ ମିଶାଇ ଦେଇଥାଉ । ଆମେ ମିଥ୍ୟା 'ମୁଁ'ର ମୂଳକୁ ଖୋଜିବା । ଏହି ମିଥ୍ୟା 'ମୁଁ'ର ଉଦୟ ହେଉଛି କେଉଁଠୁ ତାହା ଖୋଜିବା । ଖୋଜିବା ପରେ ଆମକୁ ଜଣାପଡ଼ିବ ଯେ ଅହଂକାର ଅଦୃଶ୍ୟ ହୋଇଯାଉଛି ତଥା ଶାଶ୍ୱତ ଆତ୍ମଜ୍ୟୋତି ହିଁ ଶେଷରେ ରହିଯାଉଛି ।

ଶ୍ରେଷ୍ଠ ସାଧନା ଏହି କଥାକୁ ଖୋଜିବାରେ ରହିଛି ଯେ, 'ମୁଁ କିଏ' । ଏହା ହେଉଛି ସବୁଠାରୁ ଅଧିକ ମହାନ ପୁଣ୍ୟଶାଳୀ, ସମସ୍ତ ପାପ ନାଶକ ଜପ । ଏହା ବାସ୍ତବରେ ପ୍ରାଣାୟାମ । 'ମୁଁ ଦେହ ନୁହେଁ' ଏହି ବିଚାର ହେଉଛି ରେଚକ । 'ମୁଁ କିଏ' ଖୋଜିବା କୋଽହମ୍ ହେଉଛି ପୂରକ, 'ମୁଁ ହିଁ ସେ'- ସାକ୍ଷାତ୍କାର (ସୋଽହମ୍) ହେଉଛି କୁମ୍ଭକ । ଯେଉଁ ସାଧକ ଏହିପରି ବିଚାର ପଦ୍ଧତିର ଅନୁସରଣ କରନ୍ତି ତାଙ୍କ ପାଇଁ ଅନ୍ୟ କୌଣସି ପ୍ରକାର ସାଧନାର ଆବଶ୍ୟକତା ନାହିଁ । ଆତ୍ମ-

ବିଚାରର ଫଳ ସ୍ୱରୂପ ଏହି ଅନୁଭୂତି ହେବାର ଅଛି ଯେ, ଆତ୍ମା ହିଁ ସବୁକିଛି ତଥା ଏହା ବ୍ୟତୀତ ଆଉ କିଛି ନାହିଁ ।

ଜୀବ ନିଜର କଲ୍ୟାଣ ପାଇଁ ନିଜ ଅହଂକାରକୁ କୌଣସି ସଦ୍‌ଗୁରୁ ଅଥବା ନିଜ ଇଷ୍ଟଙ୍କ ସହିତ ଓତଃପ୍ରୋତ କରିଦେବା ଉଚିତ । ତେବେ ଯାଇ ତାହା ଖୁବ୍ ଶୀଘ୍ର ଆତ୍ମସାକ୍ଷାତ୍‌କାର କରି ଦେଇଥାଏ । ଗୁରୁଙ୍କ ଚରଣରେ ସମର୍ପିତ ନ ହେବା ଯାଏ କେବେହେଲେ କଲ୍ୟାଣ ହୋଇପାରିବ ନାହିଁ ।

ସାଧକ ଉପାସନା ଗୁଡିକରେ ବ୍ୟସ୍ତ ନ ରହି କେବଳ 'କୋଽହଂ'ର ଜିଜ୍ଞାସା କରି ଆତ୍ମାନୁସନ୍ଧାନ କରିନେବା ଉଚିତ୍ ।

**ପ୍ରଶ୍ନ୧୨୨ – ଆତ୍ମା କ'ଣ ବ୍ରହ୍ମଙ୍କ ବିବର୍ତ୍ତ ?**

**ଉତ୍ତର –** ଯେତେବେଳେ ବ୍ୟକ୍ତି ଅହଂକାରଗୁଡ଼ିକର ବାସ୍ତବ ତତ୍ତ୍ୱ ସ୍ୱର୍ଣ୍ଣର ଉପେକ୍ଷା କରି ଅଳଂକାରଗୁଡ଼ିକୁ ମହତ୍ତ୍ୱ ଦେଇଥାଏ, ସେତେବେଳେ ତାକୁ ବତେଇ ଦିଆଯାଇଥାଏ ଯେ ସେଗୁଡିକ ହିଁ ସ୍ୱର୍ଣ୍ଣ – ସ୍ୱର୍ଣ୍ଣର ରୂପାନ୍ତର (ବିବର୍ତ୍ତ) । କିନ୍ତୁ ସେହିଭଳି ତୁମେ ଆତ୍ମାର ବିବର୍ତ୍ତ ନୁହଁ । ତୁମେ ନିଜେ ହିଁ ହେଉଛ ଆତ୍ମା, କୁଟସ୍ଥ, ଏକରସ ଅପରିବର୍ତ୍ତନଶୀଳ ସ୍ୱରୂପ। ତୁମେ ଆତ୍ମାର, ବ୍ରହ୍ମର ରୂପାନ୍ତର ନୁହେଁ ।

**ପ୍ରଶ୍ନ ୧୨୩– ମୁଁ ଏକାନ୍ତ ସ୍ଥାନକୁ ଯିବାକୁ ଚାହୁଁଛି ?**

**ଉତ୍ତର –** ନିର୍ଜନତା ମନୁଷ୍ୟ ମନରେ ରହିଛି । ସାଂସାରିକ ଅଶାନ୍ତିରେ ଘେରା ହୋଇଥିଲେ ବି ବ୍ୟକ୍ତି ମାନସିକ ଶାନ୍ତି ବଜାୟ ରଖିବାରେ ସମର୍ଥ ହୋଇଥାନ୍ତି । ଅନ୍ୟ ଲୋକ ନିର୍ଜନରେ ବଣରେ ରହି ବି ମନକୁ ବଶ କରିବାରେ ଅସମର୍ଥ ହୋଇପାରନ୍ତି । ତାଙ୍କୁ ନିର୍ଜନରେ ରହିବା ଲୋକ କୁହାଯାଇ ପାରିବ ନାହିଁ । ବାସନାରେ ରହିଥିବା ବ୍ୟକ୍ତି ହୁଏତ ଯେଉଁଠି ରହିଥାନ୍ତୁ ସେ ନିର୍ଜନତାକୁ ପ୍ରାପ୍ତ କରିପାରିବେ ନାହିଁ । ବାସନାଗୁଡ଼ିକ ପ୍ରତି ନିର୍ଲିପ୍ତ ବ୍ୟକ୍ତି କେଉଁଠି ରହନ୍ତୁ ନା କାହିଁକି ସେ ନିର୍ଜନରେ ହିଁ ଅଛନ୍ତି । ନିର୍ଜନତା ତ ନଗର ଏବଂ ସାଂସାରିକ କାର୍ଯ୍ୟଗୁଡ଼ିକର ଭିଡ଼ରେ ବି ସ୍ଥିର ରହିପାରେ । ଯେତେବେଳେ କି ଅଜ୍ଞାନ ନିର୍ଜନ ବଣରେ ରହି ବି ନିଜ ମନର ବିଚାରଗୁଡ଼ିକର ଭିଡ ଭିତରେ ମାତି ରହିଥାଏ ।

ଆତ୍ମାରେ ସ୍ଥିର ରହିବା ହିଁ ନିର୍ଜନତା । କାରଣ ଆତ୍ମା ଠାରୁ ଭିନ୍ନ ଅନ୍ୟ କିଛି ବସ୍ତୁ ନାହିଁ । ଆତ୍ମା ଠାରୁ ଭିନ୍ନ ଅନ୍ୟ କିଛି ବସ୍ତୁ ନାହିଁ । ଆତ୍ମା ଠାରୁ ଭିନ୍ନ କେଉଁଠି କୌଣସି ବସ୍ତୁ ବା ସ୍ଥାନ ନାହିଁ । ଆତ୍ମା ବ୍ୟାପକ ହୋଇଥିବାରୁ କେଉଁଠିକି ଯିବା ଅସମ୍ଭବ ଏବଂ ଅସଙ୍ଗତ ହୋଇଥାଏ । ତୁମେ କ'ଣ ଆତ୍ମା ଠାରୁ ବାହାରକୁ ଯାଇପାରିବ ? ତେବେ ନିବୃତ୍ତି କେଉଁଠାରୁ କେଉଁଠିକି ଗଲେ ହେବ ? ନିର୍ଜନର

ଅର୍ଥ, ସନ୍ୟାସୀର ଅର୍ଥ, ନିବୃତ୍ତିର ଅର୍ଥ, ବୈରାଗ୍ୟର ଅର୍ଥ ହେଉଛି ଗୋଟିଏ- ତାହା ହେଉଛି ଆତ୍ମଭାବରେ ସ୍ଥିର ରହିବା । ଆତ୍ମା ସଦାବେଳେ ରହିଛି । ତୁମେ ହିଁ ଆତ୍ମା । ବର୍ତ୍ତମାନ ତୁମେ ଯଦି ଆତ୍ମାରେ ନାହଁ, ତେବେ ତୁମେ ଆଉ କେଉଁଠି ଅଛ ? ତୁମର କୁଆଡ଼େ ଯିବାକୁ ଅଛି ? କେବଳ ଆବଶ୍ୟକତା ସେହି ଦୃଢ ବିଶ୍ୱାସର ରହିଛି ଯେ, ତୁମେ ହେଉଛ ଆତ୍ମା, ନା ତୁମର କୁଆଡେ ଯିବାର ଅଛି ନା ତ୍ୟାଗ କରିବାର ଅଛି ।

ତୁମେ କେଉଁଠି ବି ରହ, କୌଣସି ସ୍ଥିତିରେ ରହ, ଏଥିରେ ତୁମର ଆତ୍ମା ହେବାରେ କ'ଣ ଫରକ ପଡୁଛି ? କିଛି ନୁହେଁ । ତତ୍ତ୍ୱର କଥା ହେଉଛି ମନର ନିଜ ମୂଳ ଆତ୍ମ ସ୍ୱରୂପ ହୋଇରହିବା । ମନ ଯଦି ଚଞ୍ଚଳ ତେବେ ନିର୍ଜନ ସ୍ଥାନରେ ବି ସାଧୁ ମହାତ୍ମା ବଜାର ଭଳି ଭିଡ଼ ଜମେଇ ଦେଇଥାନ୍ତି ।

**ପ୍ରଶ୍ନ ୧୨୪– ପ୍ରଜ୍ଞାନ କ'ଣ ?**

**ଉତ୍ତର –** ବାସ୍ତବରେ ଜାଗ୍ରତ ଅବସ୍ଥା ହେଉଛି ଅଜ୍ଞାନ ଏବଂ ସୁଷୁପ୍ତି ଅବସ୍ଥା ହେଉଛି ପ୍ରଜ୍ଞାନ ଅର୍ଥାତ୍ ପୂର୍ଣ୍ଣଜ୍ଞାନ । ଶ୍ରୁତି ଅନୁସାରେ 'ପ୍ରଜ୍ଞାନଂ ବ୍ରହ୍ମ'–ପ୍ରଜ୍ଞାନ ହେଉଛି ବ୍ରହ୍ମ । ବ୍ରହ୍ମ ନିତ୍ୟ ଅଟନ୍ତି । ସୁଷୁପ୍ତିର ଅନୁଭବକାରୀଙ୍କୁ ପ୍ରାଜ୍ଞ କୁହାଯାଏ । ସେ ତିନିଟି ଅବସ୍ଥାରେ ପ୍ରଜ୍ଞାନମ୍ । ସୁଷୁପ୍ତି ଅବସ୍ଥାରେ ଏହାର ବିଶେଷ ମହତ୍ତ୍ୱ ଏୟା ଯେ, ସେ ହେଉଛନ୍ତି ଜ୍ଞାନରେ ପରିପୂର୍ଣ୍ଣ (ପ୍ରଜ୍ଞାନ ଘନ)। ଜାଗ୍ରତ ଅବସ୍ଥାରେ ସେ ହେଉଛନ୍ତି ବିପରୀତ ଜ୍ଞାନ ଅର୍ଥାତ୍ ଅଜ୍ଞାନ। ଯେତେବେଳେ କି ସୁଷୁପ୍ତି ଅବସ୍ଥାରେ ସେ କେବଳ ଶୁଦ୍ଧ ପ୍ରଜ୍ଞାନ ହୋଇ ରହିଥାନ୍ତି ।

**ପ୍ରଶ୍ନ ୧୨୫– ବ୍ରହ୍ମଚର୍ଯ୍ୟ କ'ଣ ?**

**ଉତ୍ତର –** 'ମୁଁ ହିଁ ଆତ୍ମା'– ଏହି ଆତ୍ମନିଷ୍ଠା ହିଁ ନିଜେ ମନର ନୈଷ୍ଠିକ ବ୍ରହ୍ମଚର୍ଯ୍ୟ । ବ୍ରତ ବ୍ରହ୍ମଚର୍ଯ୍ୟ ନୁହେଁ । ବ୍ରହ୍ମ ଭାବରେ ଚର୍ଯ୍ୟା ଅର୍ଥାତ୍ ଅନୁଗମନର ନାମ ହେଉଛନ୍ତି ବ୍ରହ୍ମଚର୍ଯ୍ୟ । ଇନ୍ଦ୍ରିୟକୁ ନିୟନ୍ତ୍ରଣ କରିବା ପାଇଁ ବଳପୂର୍ବକ ପ୍ରୟାସ କରିବା ବ୍ରହ୍ମଚର୍ଯ୍ୟ ନୁହେଁ ।

ଯେତେବେଳେ ସ୍ୱୟଂ ଶୁକଦେବ ନିଜର ବ୍ରହ୍ମଚର୍ଯ୍ୟ ବ୍ରତର ଅଶୁଦ୍ଧତା ସମ୍ବନ୍ଧରେ ପୂର୍ଣ୍ଣ ଭାବରେ ନିଶ୍ଚିତ ନ ଥିଲେ, ସେତେବେଳେ କୃଷ୍ଣ ଥିଲେ ।

ପରୀକ୍ଷିତ ନୂଆ ଜନ୍ମ ହୋଇଥିବା ଶିଶୁ ଥିଲେ । ସ୍ତ୍ରୀ ଲୋକମାନେ ବିକଳ ହୋଇ ପରୀକ୍ଷିତଙ୍କୁ ରକ୍ଷା କରିବା ପାଇଁ ଡକା ପକାଇଲେ । କୃଷ୍ଣ କହିଲେ ଯଦି କେହି ନିତ୍ୟ ବ୍ରହ୍ମଚାରୀ ଶିଶୁଟିକୁ ସ୍ପର୍ଶ କରିଦିଅନ୍ତି, ତେବେ ତାକୁ ପୁନର୍ଜୀବନ ମିଳିବ ।

ନିଜେ ଶୁକଦେବ ବି ପିଲାଟିକୁ ସ୍ପର୍ଶ କରିବାର ସାହସ କଲେ ନାହିଁ । ବିଖ୍ୟାତ ଋଷିମାନଙ୍କ ମଧ୍ୟରେ କେହି ଜଣେ ବି ବାଳକକୁ ସ୍ପର୍ଶ କରିବାର ସାହସ କଲେ ନାହିଁ । ସେତେବେଳେ କୃଷ୍ଣ ଆଗକୁ ଯାଇ ଶିଶୁଟିକୁ ସ୍ପର୍ଶ କଲେ ତଥା କହିଲେ, 'ଯଦି ମୁଁ ନିତ୍ୟ ବ୍ରହ୍ମଚାରୀ ହୋଇଥାଏ ତେବେ ଶିଶୁଟି ପୁନର୍ଜୀବନ ଲାଭ କରୁ ।' ଶିଶୁଟି ଶ୍ୱାସ ନେଲା ଏବଂ ସେ' ଦିନେ ପରୀକ୍ଷିତ ନାମରେ ବିଖ୍ୟାତ ହେଲା ।

ଟିକିଏ ଚିନ୍ତା କର ଯେ, ୧୬,୦୦୦ ଗୋପୀମାନଙ୍କ ସହିତ ସମାବୃତ୍ତ କୃଷ୍ଣ କି ପ୍ରକାର ବ୍ରହ୍ମଚାରୀ ? ସେ ହେଉଛି ଜୀବନ୍ମୁକ୍ତ, ସେ ବ୍ରହ୍ମଚାରୀ ବା ସନ୍ୟାସୀ, ଯେ ଆତ୍ମା ବ୍ୟତୀତ ଅନ୍ୟ କିଛି ଦେଖେ ନାହିଁ, ଅନୁଭବ କରେ ନାହିଁ । ସନ୍ୟାସୀ ଜୀବନରେ ବିଶ୍ୱାମିତ୍ର ଯେତିକି ପବିତ୍ର ଥିଲେ, ଯେତିକି ବିବାହ କଲା ପରେ ହେଲେ ।

**ପ୍ରଶ୍ନ ୧୨୬ – ସନ୍ୟାସ କ'ଣ ?**

**ଉତ୍ତର** – ନିଜର ବ୍ୟକ୍ତିତ୍ୱର ତ୍ୟାଗ ହିଁ ସନ୍ୟାସ । ଏହାକୁ ମୁଣ୍ଡ ଲଣ୍ଡା କରିବା ବା ଗେରୁଆ ବସ୍ତ୍ର ଧାରଣ କରିବା ଭଳି ନୁହେଁ । ଜଣେ ଗୃହୀ ବି ସନ୍ୟାସୀ ହୋଇପାରିବ, ଯଦି ସେ ନିଜକୁ ଅସଙ୍ଗାତ୍ମା ଭାବରେ ଜାଣିଛି । ଏବଂ ଏହାର ବିପରୀତରେ ଜଣେ ସନ୍ୟାସୀ ବି ଗୃହସ୍ଥ ହୋଇପାରେ, ଯଦି ସେ ନିଜର ସନ୍ୟାସ, ଆଶ୍ରମ, ମଠ ତଥା ଶିଷ୍ୟର ଅହଂକାର କରୁଥାଏ । ଅଭିମାନ ହିଁ ତାଙ୍କୁ ତଳେ ପକାଇଥାଏ । ଅର୍ଥାତ୍ ସନ୍ୟାସୀ ବି ଯଦି ଏହି ଧାରଣା ରଖିଥାନ୍ତି ଯେ 'ମୁଁ ସନ୍ୟାସୀ' ତେବେ ସେ' ପ୍ରକୃତ ସନ୍ୟାସୀ ନୁହନ୍ତି । ଏବଂ ସେହି ଗୃହସ୍ଥ ହେଉଛନ୍ତି ସଚ୍ଚା ସନ୍ୟାସୀ, ଯେ ଏହି ଅଭିମାନରୁ ମୁକ୍ତ ହୋଇଥାନ୍ତି ଯେ 'ମୁଁ ଗୃହସ୍ଥ' ।

**ପ୍ରଶ୍ନ ୧୨୭– ମାନବ ଜୀବନ ଧରି ଆମେ କିପରି ପରୋପକାର କରିବା ?**

**ଉତ୍ତର** – ମାନବ ଜୀବନରେ ଆତ୍ମଜ୍ଞାନ ପ୍ରାପ୍ତ କରିବା ହିଁ ପରମ ଉପକାର । ଆତ୍ମ ସାକ୍ଷାତ୍କାରର ବୋଧ ବିନା କେହି କେବେ ପରୋପକାର କରିପାରିବ ନାହିଁ । ନିଜର କଲ୍ୟାଣ ନ କରି ପରୋପକାରର ଚର୍ଚ୍ଚା କରିବା ଆକାଶରେ ମହଲ ଗଢିବା ଭଳି ।

ସମସ୍ତ କ୍ରିୟାଗୁଡ଼ିକ ବାସନା ଯୋଗୁ ହୋଇଥାଏ, ବାସନା ଅହଂକାରରୁ ଜନ୍ମ ନେଇଥାଏ, ଅହଂକାର ଅଜ୍ଞାନ ଯୋଗୁ ହୋଇଥାଏ । 'ମୁଁ କରୁଛି' ଏହିଭଳି କହିବା ହିଁ ମୂଢତା ଏବଂ ବନ୍ଧନର କାରଣ ।

**ପ୍ରକୃତେ କ୍ରିୟମାଣାଣି ଗୁଣେ କର୍ମାଣି ସର୍ବଶଃ**

ଆତ୍ମ ସାକ୍ଷାତ୍କାର ପରେ ଜ୍ଞାନୀ ହିଁ ଜଗତରେ ଅଧିକ ପ୍ରଭାବଶାଳୀ ଢଙ୍ଗରେ ସେବା କରିପାରନ୍ତି । ଆତ୍ମଜ୍ଞାନ ରହିତ ମୂଢ ଲୋକ ପରୋପକାର କରିପାରିବ ନାହିଁ ବରଂ ସେ' ନିଜ ସାଙ୍ଗରେ ଅନ୍ୟମାନଙ୍କୁ ବି ନରକରେ ପକେଇଦବ । ଯେତେବେଳେ ବ୍ୟକ୍ତି ନିଜେ ଶାନ୍ତ ନୁହେଁ, ସେତେବେଳେ ସେ ସମାଜ ବା ପରିବାରରେ ଶାନ୍ତିର ପ୍ରୟାସ କେମିତି କରିବ ? କିନ୍ତୁ ଯଦି କେହି ଆତ୍ମାର ବୋଧକରି ଶାନ୍ତ ହୋଇଯାନ୍ତି, ତେବେ ତାଙ୍କର ବ୍ୟକ୍ତିଗତ ପ୍ରୟାସ ବିନା ବି ଶାନ୍ତିର ପ୍ରୟାସ ବଳେ ବଳେ ହୋଇଚାଲିବ ।

ନିଜର ଚିନ୍ତା କର । ସଂସାରକୁ ତା' ବାଟରେ ରକ୍ଷା କରିବା, ସମ୍ଭାଳିବା, କଲ୍ୟାଣ କରିବା ଉପରେ ଛାଡ଼ିଦିଅ । ନିଜ ଆତ୍ମାକୁ ଦେଖ । ତୁମକୁ ପରମାତ୍ମା ସମାଜ ସୁଧାରିବା ପାଇଁ, ସମାଜ କଲ୍ୟାଣ କରିବା ପାଇଁ ଠିକା ଦେଇନାହାନ୍ତି । ବ୍ୟକ୍ତିଗତ କଲ୍ୟାଣ ହିଁ ବିଶ୍ୱକଲ୍ୟାଣ, କାରଣ ବ୍ୟକ୍ତି-ବ୍ୟକ୍ତିର ଉନ୍ନତି ହିଁ ବିଶ୍ୱର ଉନ୍ନତି, ପରୋପକାର । ଅଜ୍ଞାନୀ ଜଗତକୁ ନିଜ ଠାରୁ ଅଲଗା ବୋଲି ମାନିନେଇ ଅପୂର୍ଣ୍ଣତା ଏବଂ କ୍ଳେଶରେ ପୀଡିତ ହୋଇଥାଏ ।

ମୂର୍ଖଲୋକ ହିଁ ଏମିତି କହିଥାନ୍ତି ଯେ, ମୋତେ ଶାନ୍ତି, ମୁକ୍ତି ନ ମିଳିଲା ନାହିଁ କିନ୍ତୁ ମୁଁ ସମସ୍ତଙ୍କୁ ଶାନ୍ତି, ମୁକ୍ତି ବାଣ୍ଟିବା ପାଇଁ, ଦେବା ପାଇଁ ଚାହୁଁଛି । ହୁଏତ ମୋତେ ମୁକ୍ତି-ଶାନ୍ତି ପଛରେ ମିଳୁ ମାତ୍ର ମୁଁ ତା' ପୂର୍ବରୁ ସବୁ ମନୁଷ୍ୟମାନଙ୍କୁ ମୁକ୍ତ କରାଇଦେବାକୁ ଚାହୁଁଛି । ଏହି କଥନ ହେଉଛି ସେହିପରି, ଯେମିତି କୌଣସି ଲୋକ ସ୍ୱପ୍ନରେ ଥାଇ ଏହା ଭାବୁଛି ଯେ, ମୋର ଜାଗିବା ପୂର୍ବରୁ ସେହି ସବୁ ସ୍ୱପ୍ନ ରାଜ୍ୟର ଲୋକମାନଙ୍କୁ ଜାଗ୍ରତ କରାଇଦେବି, ତେବେ ମୋ ପାଇଁ ଏହା ହେବ ପରୋପକାର, ପରମଶାନ୍ତି ଏବଂ ମୁକ୍ତି । ଏହିଭଳି ସ୍ୱପ୍ନ ଦ୍ରଷ୍ଟା ବି ଉପରୋକ୍ତ ଉପକାରୀ ଦାର୍ଶନିକ ଭଳି ହାସ୍ୟାସ୍ପଦ ଅଟନ୍ତି । କଣ ନିଜେ ଜାଗ୍ରତ ହେବା ବ୍ୟତୀତ ସ୍ୱପ୍ନ ରାଜ୍ୟରେ କଣ କେହି ଅନ୍ୟ ଲୋକ ଅଛନ୍ତି ଯାହାଙ୍କୁ ଜାଗ୍ରତ କରାଯାଇପାରିବ ? ସେହିପରି ନିଜ କଲ୍ୟାଣ କରିବା ବ୍ୟତୀତ ଆଉ କ'ଣ କେହି ଅଛନ୍ତି ଯାହାର କଲ୍ୟାଣ କରାଯାଇପାରିବ ? ଏଣୁ ନିଜକୁ ଜାଣି ଶାନ୍ତ ହୋଇ ବସ ।

**ପ୍ରଶ୍ନ ୧୨୮– ଆତ୍ମା ବ୍ୟତୀତ ଯଦି ଆଉ କିଛି ନାହିଁ ତେବେ ସେହି ଜ୍ଞାତା, ଦ୍ରଷ୍ଟା କିଏ ଏବଂ ତାହା କାହାର ବୋଲି କୁହାଯାଇଥାଏ ?**

**ଉତ୍ତର –** ଆତ୍ମା ହେଉଛି ଅଦ୍ୱୟ ଚେତନ ସତ୍ତା ମାତ୍ର । ଆତ୍ମା ହେଉଛନ୍ତି ଜ୍ଞାନ କିନ୍ତୁ ଜ୍ଞାତା ନୁହନ୍ତି । ଜ୍ଞାତା, ସର୍ବଦା ଜ୍ଞେୟ ଏବଂ ଦ୍ରଷ୍ଟା, ଦୃଶ୍ୟର ଅପେକ୍ଷା ରଖିଥାଏ ।

ଯଦି ଦୃଶ୍ୟ ନାହିଁ ତେବେ ଦ୍ରଷ୍ଟା ଏବଂ ଜ୍ଞେୟ ନାହିଁ, ତ ଜ୍ଞାତା ବି ନାହାନ୍ତି । ଯେମିତି ସୁଷୁପ୍ତି ଅବସ୍ଥାରେ ସେଇଠି କିଛି ହେଲେ ଜ୍ଞେୟ, ଦୃଶ୍ୟ ନାହିଁ । ସେଥିପାଇଁ ସେଠାରେ ଜ୍ଞାତା, ଦ୍ରଷ୍ଟା ବି ନାହାନ୍ତି । ଆତ୍ମା ହିଁ ସତ୍ୟ । ଆତ୍ମା ଯଦି ଜ୍ଞାତା ହୋଇଥାନ୍ତେ, ତେବେ ତାଙ୍କର ଦ୍ରଷ୍ଟାପଣିଆ, ଜ୍ଞାତାପଣିଆ ଯେମିତି କି ସେମିତି ସଦାବେଳେ ରହିଥାନ୍ତା, କିନ୍ତୁ ସୁଷୁପ୍ତି ତଥା ଧ୍ୟାନ, ସମାଧିରେ ସେହି ଦ୍ରଷ୍ଟା, ଜ୍ଞାତା ନଥାନ୍ତି । ଏଥିରୁ ଏହା ସିଦ୍ଧ ହୋଇଯାଉଛି ଯେ ଆତ୍ମା, ଜ୍ଞାନ କିନ୍ତୁ ସେ ଜ୍ଞାତା ନୁହନ୍ତି । ଦେଖିବାକୁ ଅଛି କିନ୍ତୁ ସେ ଦେଖେ ନାହିଁ । ଯେମିତି ସୂର୍ଯ୍ୟ ହେଉଛନ୍ତି ଆଲୋକ କିନ୍ତୁ ପ୍ରକାଶକ ନୁହନ୍ତି । ତେବେ ଜ୍ଞାତା କିଏ, ଦ୍ରଷ୍ଟା କିଏ ଅଖଣ୍ଡ ଅଦ୍ୱୟ ଆତ୍ମା ବ୍ୟତୀତ ? ଏହି ଆତ୍ମା ହିଁ ନିଜର ଜ୍ଞାନ ସ୍ୱଭାବ ଯୋଗୁ ଅନ୍ତଃକରଣ ବୃତ୍ତି ମାଧ୍ୟମରେ ଜ୍ଞାତା, ଦ୍ରଷ୍ଟା କୁହାଯାଉଛନ୍ତି । ଆତ୍ମା ହିଁ ସବୁ ଭିତରେ ଅନୁସରଣୀୟ । ମନ, ବୁଦ୍ଧିରେ ପଡ଼ିଥିବା ପ୍ରକାଶ ଆତ୍ମାକୁ ହିଁ ପ୍ରମାତା, ଜୀବ, ଚିଦାଭାସ ଇତ୍ୟାଦି ପାରିଭାଷିକ ନାମ ଦିଆଯାଇଛି । ମାତ୍ର ଏହା ଆତ୍ମା ନୁହେଁ, ଯଦିଓ ଏହା ଆତ୍ମା ଠାରୁ ଭିନ୍ନ ବି ନୁହେଁ । କାରଣ ଜ୍ଞାନ ସତ୍ତା ଏଥିରେ ବି ଅନୁକରଣୀୟ ।

ବାସ୍, ଏହି ଜୀବ ହିଁ ୮୪ ଲକ୍ଷ ଯୋନୀ ଗୁଡ଼ିକରେ ବୁଲୁଛି । ଏଥିରେ ହିଁ କର୍ତ୍ତା-ଭୋକ୍ତା ପଣିଆର ଭ୍ରାନ୍ତି ହେଉଛି । ଏହା ସୁଖୀ-ଦୁଃଖୀ ହୋଇ ବନ୍ଧନ ମୋକ୍ଷକୁ ପାଉଅଛି ।

ଏହି ଜ୍ଞାତା, ଦ୍ରଷ୍ଟା ତ ସ୍ୱପ୍ନ ଦ୍ରଷ୍ଟା ପରି ମିଥ୍ୟା । ଯେତେବେଳେ ପ୍ରଜା ନାହାନ୍ତି ସେତେବେଳେ ରାଜା କେଉଁଠିକାର ଏବଂ କାହାର ? ଯେତେବେଳେ ସ୍ୱପ୍ନ ହିଁ ନାହିଁ ତେବେ ଦ୍ରଷ୍ଟା କାହାର ? ଯାହା ଉଦୟ-ଅସ୍ତ ଧର୍ମଯୁକ୍ତ ଜଗତ ତାହା ସତ୍ୟ ନୁହେଁ । ସତ୍ୟ ତ ତିନି କାଳରେ ରହିଥାଏ । ତେଣୁ ଉଦୟ-ଅସ୍ତ, ଦୃଶ୍ୟ ଜଗତ, ବୃତ୍ତିର ଦ୍ରଷ୍ଟା, ଜ୍ଞାତା ଚିଦାଭାସ ବି ସତ୍ୟ ନୁହେଁ । ଆତ୍ମଜ୍ଞାନ ବିନା ସେହି ଜ୍ଞାତା, ଜୀବ, ଚିଦାଭାସ, ପ୍ରମାତାର ମିଥ୍ୟାପଣିଆ ବି ସିଦ୍ଧ ହେଉନାହିଁ, ଯେମିତି ଦଉଡି ଜ୍ଞାନ ବିନା ସର୍ପ, ଦଣ୍ଡ ଇତ୍ୟାଦିର ମିଥ୍ୟାପଣିଆ ସିଦ୍ଧ ହେଉନାହିଁ, ସେମିତି ତାହାର ସଂସାର ବନ୍ଧନ, ଦୁଃଖରୁ ମୁକ୍ତି ପାଇବା ବି ସମ୍ଭବ ନୁହେଁ ।

'ଏହା' 'ଏହା' ରୂପରେ ତ ବି ଭିତର ଅଥବା ଇନ୍ଦ୍ରିୟମାନଙ୍କ ଦୃଷ୍ଟିକୁ ଆସେ, ଜାଣିବା ପରିସରକୁ ଆସେ । ସେସବୁ ଦୃଶ୍ୟ, ଜ୍ଞେୟ, ଜଡ଼, ଅନାତ୍ମା ଶ୍ରେଣୀକୁ ଆସିଥାଏ ଏବଂ ସେଗୁଡ଼ିକୁ ଜାଣିବା, ଦେଖିବା ବାଲା ଦ୍ରଷ୍ଟା, ଜ୍ଞାତା ଭିନ୍ନ ହିଁ ହୋଇଥାନ୍ତି ।

**ପ୍ରଶ୍ନ ୧୨୯– ଏହି ମନ, ବୁଦ୍ଧି କ'ଣ ବାସ୍ତବରେ ଜ୍ଞାତା ନା ଏମାନଙ୍କର କୌଣସି ଜ୍ଞାତା ଅଛନ୍ତି ? ସେ କିଏ ଏବଂ କେଉଁଠି ରହନ୍ତି ?**

ଉତ୍ତର – ଆତ୍ମବସ୍ତୁ ତ ଏକ, ଅଖଣ୍ଡ, ସର୍ବରୂପ । ତାହାର ନାମ ଜ୍ଞେୟର ଅପେକ୍ଷା ଯୋଗୁ ଜ୍ଞାତା ତଥା ଦୃଶ୍ୟର ଅପେକ୍ଷା ଯୋଗୁ ଦ୍ରଷ୍ଟା ଭାବରେ କଳ୍ପନା କରାଯାଇଛି । ସେ ଭୋକ୍ତା ଏବଂ ସେ ଭୋଗ୍ୟ । ନା ସେ ଜ୍ଞାତା ନା ସେ ଦ୍ରଷ୍ଟା, ନା ସେ ଭୋକ୍ତା, କାରଣ ତା'ଠାରୁ ଭିନ୍ନ ହୋଇ କିଛି ହେଲେ ନାହିଁ ।

ଯେମିତି ଜଣେ ଲୋକର ଅପେକ୍ଷାରେ ପୁଅ, ଭାଇ, ପତି, ଶଳା, ଜ୍ୱାଇଁ, ଭିଣୋଇ, ଶ୍ୱଶୁର, ଦିଅର, ଜ୍ୟେଷ୍ଠ ଇତ୍ୟାଦି ଉପାଧିଧାରୀ ହୋଇଯାନ୍ତି । ଯଦି ସମସ୍ତ ଉପାଧିର ଅଭାବ ହୋଇଯାଏ, ତେବେ ସେ କେବଳ ଲୋକଟିଏ ହୋଇ ରହିଯାଏ । ଏକୁଟିଆ ଲୋକଟି ଅଛି ଆଖି ଆଗକୁ ମା ଆସିଗଲେ ତେବେ ତାଙ୍କୁ ପୁଅ କୁହାଗଲା । ଯଦି ମା' ମରିଯାନ୍ତି ତ ପୁଅ ବି ନାହିଁ । ଆଗରେ ପତି ଅଛନ୍ତି ତ ପତ୍ନୀ କୁହାଗଲା । ପତି ମରିଗଲେ ତ ବିଧବା ନାହିଁ, ପତ୍ନୀ ନାହିଁ କେବଳ ରହିଗଲେ ସ୍ତ୍ରୀ ।

ଆତ୍ମା, ଚିଦାଭାସ ଆଗକୁ ଆସିଗଲେ ଜ୍ଞାତା, ଦ୍ରଷ୍ଟା କୁହାଯାଇଥାନ୍ତି । ଆତ୍ମା ଜାଣିବାବାଲା ନୁହଁନ୍ତି । ଆତ୍ମା ଜାଣିବାବାଲା ହୋଇଥିଲେ ତ ସୁଷୁପ୍ତିରେ ବି ଜାଣିବାବାଲା ହୋଇ ରହନ୍ତେ କିନ୍ତୁ ସେଇଠି ଆତ୍ମା ତ ଅଛି ମାତ୍ର ଚିଦାଭାସ, ଏହି ଅନ୍ତଃକରଣ ମନ, ବୁଦ୍ଧି ରହନ୍ତି ନାହିଁ, ସେଥିପାଇଁ ସମାଧି, ସୁଷୁପ୍ତିରେ କିଛି ହେଲେ ଜାଣିହୁଏ ନାହିଁ, କିନ୍ତୁ ଆତ୍ମା ତ ସେତେବେଳେ ବି ଅଛି । ଏହାର ତାତ୍ପର୍ଯ୍ୟ ହେଉଛି ଏୟା ଯେ ଏହି ଜ୍ଞାତାପଣିଆ, ପ୍ରମାତା ଆତ୍ମାରେ ନାହିଁ । ଆତ୍ମା ନିଜେ ଅଛି ଅନ୍ୟ କିଛି ନାହିଁ । ତେବେ ସେ କାହାର ଜ୍ଞାତା ହେବେ ? କାହାର ଦ୍ରଷ୍ଟା ହେବେ ? କାହାର ଭୋକ୍ତା ହେବେ ?

ଏଣୁ ଦୃଶ୍ୟ-ଦ୍ରଷ୍ଟା, ଜ୍ଞାତା-ଜ୍ଞେୟ, ପ୍ରମାଣ-ପ୍ରମେୟ, ଧ୍ୟାତା-ଧ୍ୟେୟର ଦ୍ୱୈତ ବୁଦ୍ଧିରୁ ରହିତ ହୋଇ ଯିଏ ଶେଷରେ ରହନ୍ତି, ସେହି ଦ୍ୱନ୍ଦ୍ୱର ପ୍ରକାଶକ ନିର୍ବିକଳ୍ପ ନିଜେ ନିଜର, ତାଙ୍କୁ ଯେ ମୁଁ ରୂପରେ ଜାଣନ୍ତି ସେ' ଜ୍ଞାନୀ ବ୍ୟକ୍ତି ।

'ନେତି-ନେତି'ର ପ୍ରକାଶକ ହେଉଛନ୍ତି ସାକ୍ଷୀ ଆତ୍ମା, ସେ କେବେ ହେଲେ 'ଇଦଂ', 'ଏହା' ରୂପରେ ଜଣାଯାଇ ପାରିବେ ନାହିଁ । ତାଙ୍କୁ ତ 'ଅହଂ', 'ମୁଁ' ରୂପରେ ନିଶ୍ଚୟ କରାଯାଇପାରିବ ଏବଂ ଏହି ନିଶ୍ଚୟ ବି ସେହି ମିଥ୍ୟା ଚିଦାଭାସ ଦ୍ୱାରା ହିଁ ହେବ । ମାତ୍ର ଯେତେବେଳେ ଏହି ମିଥ୍ୟା ଚିଦାଭାସ ନିଜକୁ ବ୍ରହ୍ମରୂପ ବୋଲି କହେ ବା ମାନେ ସେତେବେଳେ ଏହା ନିଜର ସତ୍ତାକୁ ଅଭାବ ରୂପରେ ନିଶ୍ଚୟ କରାଇ ନିଜ ପ୍ରତିବିମ୍ବର ପ୍ରକାଶକ ବିମ୍ବ ରୂପରେ ହିଁ ଅହଂକାର କରିଥାଏ ଯେ, ମୁଁ

ଏହି ପ୍ରତିବିମ୍ବ ନୁହେଁ । ସତ୍ତା, ମୂଳ ସ୍ରୋତ ହେଉଛି ଚିଦାତ୍ମା, ଚିଦାଭାସ ନୁହେଁ । ସବୁବେଳେ ନିଜ ଠାରୁ ଭିନ୍ନ ପଦାର୍ଥକୁ ହିଁ ଜଣାଯାଇଥାଏ । ତୁମେ ହିଁ ଆତ୍ମା, ସେ ତୁମ ଠାରୁ ଭିନ୍ନ ନୁହନ୍ତି, ସେଥିପାଇଁ ଆତ୍ମାକୁ କେହି ଜାଣି ପାରିବେ ନାହିଁ । ନିଜକୁ ନିଜେ ଜାଣିବାର ବିଷୟ ନୁହେଁ । ଯଦ୍ଦ୍ୱାରା ସବୁକିଛି ଜଣାଯାଇଥାଏ ତାକୁ କିଏ ଜାଣିବ ? ନିଜ କାନ୍ଧରେ ନିଜେ କେମିତି ଚଢିବ ? ଏଣୁ ସେ ଅନ୍ୟ କେହି ନୁହେଁ, ସେ' ହିଁ ତୁମେ । ଯେଉଁ ବସ୍ତୁ କାହାର ସାପେକ୍ଷତାରେ ହୁଏ, ତାହା ହୁଏ ନାହିଁ । ଉଭୟ ସାପେକ୍ଷ ହୋଇଥିବାରୁ ମିଥ୍ୟା ବୋଲି ସିଦ୍ଧ ହୋଇଥାଏ । ଉଭୟ ଆତ୍ମାରେ ହିଁ କଳ୍ପିତ-ଦଉଡିରେ ସର୍ପ, ଶାମୁକାରେ ରୂପା, ମରୁଭୂମିରେ ଜଳ ଭଳି । ଏଣୁ ଏସବୁ ଅଧ୍ୟସ୍ତ ହୋଇଥିବାରୁ ଏହା ଅଭାବର ରୂପ । ଅଧିଷ୍ଠାନ ଦଉଡି, ମରୁଭୂମି, ଶାମୁକା ହିଁ ବ୍ୟବହାରିକ ଭାବରେ ସତ୍ୟ । ସେହିପରି ଆତ୍ମା ହିଁ ସତ୍ୟ । ଏହି ଦ୍ରଷ୍ଟା-ଦୃଶ୍ୟ, ଜ୍ଞାତା-ଜ୍ଞେୟ, ପ୍ରମାଣ-ପ୍ରମେୟ, ଧ୍ୟାତା-ଧ୍ୟେୟ ସବୁ କିଛି କଳ୍ପିତ ।

ଯାହାକୁ ଆମେ 'ଏହା ରୂପରେ' ବତେଇ ପାରିବା ନାହିଁ ଏବଂ ଯେ ଭାବ-ଅଭାବ, ଉଦୟ-ଅସ୍ତର ପ୍ରକାଶକ, ମାତ୍ର ସ୍ୱୟଂ ଜାଣିବାର ବିଷୟ ବି ହୁଅନ୍ତି ନାହିଁ, ତେବେ ତ ସେ ଅନ୍ୟ କେହି ନୁହନ୍ତି ନିଜେ ହିଁ ନିଜର, ସେ' ହିଁ ବ୍ରହ୍ମ । ଯାହାର ଅସ୍ତିତ୍ୱକୁ ବି ଅସ୍ୱୀକାର କରାଯାଇପାରିବ ନାହିଁ ତାଙ୍କୁ ହିଁ ବ୍ରହ୍ମ କୁହାଯାଏ । ସେ ହିଁ ତୁମେ । ନିଜେ ନିଜକୁ କେହି କହିପାରିବ ନାହିଁ ଯେ, ମୁଁ ନାହିଁ । ଏହା କହୁଥିଲେ ବି ମୁଁ ଅଛି ।

ଆତ୍ମାକୁ ମନ, ବୁଦ୍ଧି, ଇନ୍ଦ୍ରିୟ ଇତ୍ୟାଦି ସଂଘାତ ଠାରୁ ନା ଭିନ୍ନ କୁହାଯାଇପାରେ ନା ତାହାର ମଝି ଅବସ୍ଥାକୁ- ଯେ ସେହି ରହସ୍ୟକୁ ଜାଣିନିଅନ୍ତି ସେ ତତ୍ତ୍ୱବେତ୍ତା । ଆତ୍ମା ସୂର୍ଯ୍ୟ ଭଳି କେବଳ ପ୍ରକାଶକାରୀ, ପ୍ରକାଶ ସ୍ୱରୂପ, କିନ୍ତୁ ଯାହା-ଯାହା ତାଙ୍କ ଦ୍ୱାରା ପ୍ରକାଶିତ ହୁଏ ବା ଯେଉଁ ଯେଉଁ ରୂପରେ ସେ ସ୍ୱୟଂ ପ୍ରକାଶିତ ହୁଅନ୍ତି, ସେ ତାଙ୍କୁ ସ୍ପର୍ଶ ବି କରନ୍ତି ନାହିଁ । କେବଳ ପ୍ରକାଶିତ ହେବା ତାଙ୍କର କାର୍ଯ୍ୟ, ବାକୀ ରହେ ଅନେକ ରୂପଗୁଡ଼ିକୁ ଦେଖିବା । ସିନେମା ଜଗତକୁ ଦେଖିବା ତ ଦ୍ରଷ୍ଟାର କାମ, ଅନ୍ତଃକରଣ, ମନ, ବୁଦ୍ଧିର କାମ । ତାହା ତ କେବଳ ବିସ୍ତାରିତ ହେବା ଜାଣିଥାଏ । ଘରର ଆକାର ହୋଇ ପୁଣି ଘର ଭିତରେ କଣ କଣ ଟେବୁଲ, ଚଉକି, ଆଲମାରି, ପଲଙ୍କ, ବହି, ଲୁଗା, ଚପଲ, ଜୋତା ଅଛି ସେହି ଜ୍ଞାନ ଆଲୋକର ନାହିଁ । ଏହା ଆମର କଳ୍ପନା ଯେ, ଏହି ପଙ୍ଖା ଟେବୁଲ ଉପରେ ରଖାହୋଇଛି । ଆମେ ଯେଉଁ କଳ୍ପନା କରୁ, ତାହା ସେହିପରି ହାତୀ, ଘୋଡ଼ା, ଘଟ, ପଟ ଇତ୍ୟାଦି ରୂପରେ ପ୍ରକଟିତ ହୋଇ ଭାସିଯାଏ । ସେ ନିଜ ତରଫରୁ

କେବଳ ପ୍ରକାଶ ମାତ୍ର, ପ୍ରକାଶିତ ପଦାର୍ଥର ଜ୍ଞାନ କରାଇବା ତାଙ୍କର କାମ ନୁହେଁ । ଏଣୁ ଏମିତି କେବେ ପଚାର ନାହିଁ ଯେ, କେଉଁ କେଉଁ ରୂପରେ ସେ ପ୍ରକାଶ କରୁଛନ୍ତି । ସବୁ ଭାବରେ ସେ' ହିଁ ତ ନିଜର ପ୍ରକାଶନ କରୁଛନ୍ତି, ତାଙ୍କ ବ୍ୟତୀତ ଅନ୍ୟ କିଛି ନାହିଁ ।

**ପ୍ରଶ୍ନ ୧୩୦– ଯେ ମୋତେ ଯେଉଁ ଭାବରେ ଭଜିଥାଏ ମୁଁ ତାକୁ ସେହି ଭାବରେ ଭଜେ'– ଏହି କଥାର ତାତ୍ପର୍ଯ୍ୟ କ'ଣ ?**

**ଉତ୍ତର –** ଆମେ ରାମ–ରାମ କରିବୁ ତ ସେ ବି ଆମର ନିରଞ୍ଜନ–ନିରଞ୍ଜନ, ତୋଷୀ–ତୋଷୀ, ସରିତା–ସରିତା ଭଜନ କରିବେ ସେମିତି ନୁହେଁ ।

କାଠ ଯେଉଁ ଆକାରର ହୋଇଥାଏ, କୋଇଲା ଯେଉଁ ଆକାରର ଲମ୍ୱା –ଚଉଡା ହୋଇଥାଏ, ଅଗ୍ନି ସେହି ଆକାରରେ ପ୍ରକଟ ହୋଇଯାଏ । ଯଦ୍ୱାରା ସେ ପ୍ରକାଶିତ ହୁଅନ୍ତି, ସେ ତଦ୍ରୁପ ହୋଇ ହିଁ ପ୍ରକାଶିତ କରିଥାନ୍ତି । ମାଟିର ହାଣ୍ଡି, ସୁରାଇ, ଇଟା, ଖପର, ଦୀପାଳି, ଗଣେଶ, ଦୁର୍ଗା, ସରସ୍ୱତୀ, ଯେ ଅଲଗା ରହି ପ୍ରକାଶିତ କରନ୍ତି ନାହିଁ ବରଂ ତଦ୍‌ଭାବ, ତଦ୍ରୂପ ହୋଇ ହିଁ ସ୍ୱୟଂ ପ୍ରକାଶିତ ହୋଇଥାନ୍ତି । ନଚେତ୍ ସେ ପଦାର୍ଥ ହିଁ ହୋଇପାରିବ ନାହିଁ । ମାଟି ଅଲଗା ହୋଇ ରହିଲେ କୌଣସି ମାଟିପାତ୍ରର ଆକୃତି ହିଁ ତିଆରି ହୋଇପାରିବ ନାହିଁ । କାରଣ କାର୍ଯ୍ୟ ମଧ୍ୟରେ ସର୍ବଦା ଅଭିନ୍ନତା ହିଁ ରହିଥାଏ ।

ସେହିପରି ଏଠାରେ ବି ଯାହା–ଯାହାର ଅନୁଭବ ଆମକୁ ହେଉଛି, ଜ୍ଞାନ ହେଉଛି, ଜାଣିବା, ଦେଖିବା, ଶୁଣିବା, ଚାଖିବା, ଶୁଂଘିବାରେ ଆସୁଛି, ସେ ସବୁ ଅନୁଭବ ଜ୍ଞାନ ବି ସେହି ଚେତନ ସ୍ୱରୂପ, ଜ୍ଞାନ ସ୍ୱରୂପ ଆତ୍ମାର ତଦ୍‌ଭାବ ଯୋଗୁ ହିଁ ଅର୍ଥାତ୍ ତାହା ହୋଇଥାଏ । ତାପରେ ଜାଣିବାରେ ଆସେ ନଚେତ୍ ଜାଣିବା ଯୋଗ୍ୟ ହୋଇପାରି ନଥାନ୍ତା । ଖଣ୍ଡକୁ ଯେଉଁ ଆକୃତିର ଛାଞ୍ଚରେ ଢାଳିବ, ସେ ସେହି ଆକୃତି ହୋଇ ପ୍ରକଟ ହୋଇଯିବ । ନଚେତ୍ ସେ ଆକୃତି ହିଁ ଧାରଣ କରନ୍ତା ନାହିଁ । ସେହିପରି ଆତ୍ମା ବି ସେହି ସେହି ରୂପରେ ପ୍ରକଟ ହେଉଅଛି, ଯେଉଁ ଯେଉଁ ରୂପରେ ତୁମେ ମାନୁଅଛ । ତୁମର ମନ ଯେମିତି ସେହିପରି ନିଜର ସ୍ଥିତି ତିଆରି କରି ସେ ପ୍ରକଟ ହୋଇଯାନ୍ତି ।

ଜଣେ ସ୍ତ୍ରୀ ଲୋକକୁ ଦର୍ଶକମାନଙ୍କର କଳ୍ପନା ଅନୁସାରେ କେହି ତାକୁ ଝିଅ, କେହି ପତ୍ନୀ, କେହି ଭଉଣୀ, କେହି ବୋହୂ, କେହି ଶାଶୁ, ଶାଳୀ, ନଣନ୍ଦ, ଭାଉଜ, ଯାଆ, ମାଆ ଇତ୍ୟାଦି ରୂପରେ ପାଇଥାନ୍ତି ।

**"ଜାକୀ ରହି ଭାବନା ଜୈସୀ, ଇକ ସ୍ତ୍ରୀ ଦେଖି ତିନ ତୈସୀ"**

ସୂର୍ଯ୍ୟ ଏବଂ ଆତ୍ମା ଭିତରେ ବହୁତ ପାର୍ଥକ୍ୟ ରହିଛି । ସୂର୍ଯ୍ୟ ତ ଦୂରରେ ରହି ଆଲୋକ ଦିଅନ୍ତି, ଦୃଶ୍ୟ ପଦାର୍ଥ ତା' ଠାରୁ ଭିନ୍ନ ହୋଇଥାଏ, ସେ ଅସଙ୍ଗ ଥାନ୍ତି । ଅବଶ୍ୟ ଆତ୍ମା ବି ଅସଙ୍ଗ କିନ୍ତୁ ସେ' ସେହି ବସ୍ତୁଗୁଡ଼ିକ ଠାରୁ ଦୂରରେ ନଥାନ୍ତି, ଯାହାକୁ ସେ ପ୍ରକାଶିତ କରୁଛନ୍ତି । ଆତ୍ମା ଅନ୍ୟ କାହାକୁ ପ୍ରକାଶ କରନ୍ତି ନାହିଁ, ବରଂ ସେ ସ୍ୱୟଂ ନିଜେ ସେହି ସେହି ରୂପରେ ପ୍ରକଟ ହୋଇଥାନ୍ତି ।

ଆତ୍ମା ହିଁ ଜ୍ଞେୟ ରୂପ ଧାରଣ କରି ପ୍ରକାଶମାନ ହୁଅନ୍ତି ଏବଂ ତୁମେ ହିଁ ଜ୍ଞାତା ରୂପ ଧରି ପ୍ରକାଶମାନ ହେଉଛ । ମାତ୍ର ବାସ୍ତବରେ ନା କୌଣସି ଦୃଶ୍ୟ ଅଛି ନା ଜ୍ଞେୟ, ନା କେହି ଦ୍ରଷ୍ଟା ଅଛି ନା ଜ୍ଞାତା । ଆତ୍ମା ହିଁ ସବୁ ଦିଗରୁ ପ୍ରକାଶିତ ହେଉଛନ୍ତି, ମାତ୍ର ବୁଦ୍ଧି ହିଁ ତାଙ୍କୁ 'ଏହା, ଏହା' କରି ଗ୍ରହଣ କରିଥାଏ । ବୁଦ୍ଧି ରୂପରେ ବି ଆତ୍ମା ହିଁ ଥାନ୍ତି, ନଚେତ ଅନାତ୍ମା କିଛି ହେଲେ ଦେଖିପାରିବ ନାହିଁ ବା ଜାଣିପାରିବ ନାହିଁ । ଯେତେବେଳେ ବାସନା ଯୋଗୁ ଅନ୍ତଃକରଣରେ ଭିନ୍ନ ଭାବ ଉଦୟ ହୁଏ, ସେତେବେଳେ ବୁଦ୍ଧି ଜ୍ଞାତା ହୋଇ ସେହି ପଦାର୍ଥକୁ ଗ୍ରହଣ କରିଥାଏ । ଅନ୍ତଃକରଣ ଯୋଗୁ ହିଁ ସେ' ସେହି ପଦାର୍ଥଗୁଡ଼ିକୁ ଜ୍ଞେୟ ରୂପରେ, ନିଜକୁ ଜ୍ଞାତା ରୂପରେ ମାନିନିଏ । ଯେଉଁ ଧର୍ମ ଆତ୍ମାରେ ନଥିଲା ସେହି ଧର୍ମ ଚିଦାଭାସ ବୁଦ୍ଧି ଯୋଗୁ ଆତ୍ମାରେ କଳ୍ପନା କରି ନିଆଯାଏ ଏବଂ ସେଥିରେ ଅହଂ-ମମ ବି କରିଥାଏ ଏହା ହେଉଛି ଚିଦ୍-ଜଡ଼ ଗ୍ରନ୍ଥୀ । ଏହା ହେଉଛି ଜୀବ ଭାବ, ଏହା ଅଜ୍ଞାନ, ଏହା ଅଧ୍ୟାସ । ବାସ୍ତବରେ ସେତେବେଳେ ବି ଏହି ନିର୍ବିକାର, ଶୁଦ୍ଧ, ମୁକ୍ତାତ୍ମା କେଉଁଠି ବିକାରୀ ହୋଇନାହାନ୍ତି, ଫାନ୍ଦରେ ପଡିନାହାନ୍ତି ଏବଂ ଅଶୁଦ୍ଧ ହୋଇ ବନ୍ଧନକୁ ବି ପ୍ରାପ୍ତ ହୋଇନଥାନ୍ତି ।

ବାହାର ଭିତର ହୋଇ ଆତ୍ମା ହିଁ ପ୍ରକାଶମାନ ହୁଅନ୍ତି । ପୁଣି ଏହା ଦ୍ୱାରା ବୁଦ୍ଧିକୁ 'ଏହା', 'ଏହା'ର ଜ୍ଞାନ ହୋଇଥାଏ । ଜାଣିବାବାଲା ବି ସିଏ, ଯାହାକୁ ଦୃଶ୍ୟ ରୂପରେ ଜଣାଯାଉଛି ସେ ବି ସିଏ ।

ଯଦି କହୁଥାଅ ଯେ, ଜାଣିବାବାଲା ଜାଣିଗଲା ଏହାଦ୍ୱାରା ଦ୍ରଷ୍ଟା ଦୃଶ୍ୟ ଠାରୁ ଭିନ୍ନ ହିଁ ହୋଇଥାଏ । ତେବେ ଯେ ଦୃଶ୍ୟ ପର୍ଯ୍ୟନ୍ତ, ଜ୍ଞେୟ ପର୍ଯ୍ୟନ୍ତ ବ୍ୟାପିବ ନାହିଁ, ସେ ଜ୍ଞେୟ ବା ଦୃଶ୍ୟକୁ ଜାଣିବ କେମିତି ? ପୁନଶ୍ଚ ତାଙ୍କୁ ତ କାହାର ଜ୍ଞାନ, ଦର୍ଶନ ହିଁ ହୋଇପାରିବ ନାହିଁ ।

ବୃତ୍ତି ଚୈତନ୍ୟ ଏବଂ ବିଷୟ ଉପହିତ ଚୈତନ୍ୟର ଯେତେବେଳେ ମିଳନ ହୋଇଥାଏ ସେତେବେଳେ ବୃତ୍ତି ଚୈତନ୍ୟ ବିଷୟାକାରରେ ପ୍ରକଟ ହୋଇଯାଏ । ଯଦି ବୃତ୍ତି ଉପହିତ ଚୈତନ୍ୟ ଏବଂ ବିଷୟ ଉପହିତ ଚୈତନ୍ୟର ଅଭେଦ ନ ହୁଏ, ତେବେ

ତ ଅନ୍ତର ପଦାର୍ଥଗୁଡ଼ିକର ଏବଂ ବାହ୍ୟ ପଦାର୍ଥଗୁଡ଼ିକର ଅପରୋକ୍ଷ ଜ୍ଞାନ ହିଁ ହୋଇପାରିବ ନାହିଁ । ସେ ଦେଖିବା ଜାଣିବା ପରିସରକୁ ଆସିବେ ନାହିଁ, କାରଣ ବୃତ୍ତି ଉପହିତ ଚୈତନ୍ୟର ସେହି ସେହି ପଦାର୍ଥଗୁଡ଼ିକରେ ଯଦି ବ୍ୟାପ୍ତି ନ ହୁଏ । ଏଣୁ ଆତ୍ମା ଅନ୍ତର ବାହ୍ୟ ଉଭୟ ଦିଗରେ ପ୍ରକାଶମାନ । ବିଷମ ରୂପ ନହୋଇ ସମ ରୂପରେ, ଅନ୍ୟ ରୂପ ନ ହୋଇ ଅଭିନ୍ନ ରୂପରେ ପ୍ରକାଶମାନ ।

ଯେତେବେଳେ ସେ' ହିଁ ସବୁ ରୂପ ହୋଇ ପ୍ରକାଶମାନ ହୁଅନ୍ତି, ସେତେବେଳେ ଦ୍ୱିତୀୟ ହୋଇ କିଛି ରହିନାହିଁ । ତେବେ ଅନୁକୂଳ ପ୍ରତିକୂଳ, ଗ୍ରହଣ-ତ୍ୟାଗ କିଛି ହେଲେ ବିରୋଧୀ ହୋଇ ରହିଲା ନାହିଁ । ଏହି ଅନ୍ତଃକରଣର ବୁଦ୍ଧି ବୃତ୍ତି ଯୋଗୁ ହିଁ ଆମକୁ ଏହା ଠିକ୍ ନୁହେଁ, ଏହା ଠିକ୍ ହେଲା ନାହିଁ, ଏହା ଭୁଲ୍, ଏମିତି ନୁହେଁ, ଏମିତି ହେବା ଉଚିତ ଥିଲା ଇତ୍ୟାଦି ବିଷମତା ପ୍ରତୀତ ହୋଇଥାଏ ଏବଂ ସବୁ ଝଗଡା, କାନ୍ଦିବା, ଗାଇବା, ଦୁଃଖ, ଅଶାନ୍ତି ହୋଇଥାଏ । ସବୁ ସେହି ଆତ୍ମା । ବରଂ କେବଳ ଜ୍ଞାନ ଅଛି, ଜ୍ଞାତା ନାହିଁ । ସେ 'ଜାଣିବାକୁ' ଅଛି, ଜାଣେ ନାହିଁ । ସେ ନିଜେ ନିଜ ଭିତରେ ସବୁ କଳ୍ପନା ଶୂନ୍ୟ ବୋଧ ମାତ୍ର ସତ୍ତା । ମାତ୍ର ପ୍ରତ୍ୟେକ କଳ୍ପନାରେ ଲହରୀ ଜଳ ଭଳି ଭରପୂର । ସେହି ଜ୍ଞେୟ ଏବଂ ଜ୍ଞାତାର କଳ୍ପନା ରହିତ ବି ସେ । ସେହି ଏକ ହିଁ ସବୁ କିଛି, ମାତ୍ର ସବୁ କିଛି ତାକୁ ଛୁଏଁ ନାହିଁ, କାରଣ ସେସବୁ କିଛି ନାହିଁ । ଯେ ଏହିପରି ଜାଣିଥାନ୍ତି, ସେ ତତ୍ତ୍ୱବେତ୍ତା, ଜ୍ଞାନୀ । ଜ୍ଞାତା, ଜ୍ଞେୟର ଅପେକ୍ଷା ଦ୍ୱାରା ହୋଇଥାଏ, ଯେତେବେଳେ ଜ୍ଞେୟ ବୋଲି କିଛି ନାହିଁ, ସେତେବେଳେ ତାଙ୍କୁ ଜ୍ଞାତା ବୋଲି କୁହାଯାଇପାରିବ ନାହିଁ । ପୁଣି ଯାହା ଶେଷରେ ରହିଥାଏ, 'ନେତି-ନେତି'ର ସାକ୍ଷୀ, ସେ ମନ, ବାଣୀର ବିଷୟ ନୁହନ୍ତି ।

ଆତ୍ମା ଅନ୍ତଃକରଣର ଧର୍ମଗୁଡ଼ିକ ସହିତ ମିଶି ନିଜକୁ ଦୁଃଖୀ ବୋଲି ମାନିନିଏ ଏହା ହିଁ ହେଉଛି ତା'ର ବିକାରୀପଣିଆ, ଏହା ହିଁ ତ ତା'ର ଚିଦାଭାସପଣିଆ । ଏହା ତିଆରି ହୁଏ, ଏହା ଶେଷ ବି ହୋଇଯାଏ । ଏହା ଜାଗ୍ରତ, ସ୍ୱପ୍ନରେ ହୋଇଥାଏ, ସୁଷୁପ୍ତି, ସମାଧିରେ ହୁଏନାହିଁ । ପୁଣି ଯାହା କେତେବେଳେ ହୁଏ କେତେବେଳେ ହୁଏ ନାହିଁ, ସେହି ଜ୍ଞାତା, ଦ୍ରଷ୍ଟା, ଚିଦାଭାସ ଜୀବ ହିଁ ମିଥ୍ୟା । ଆତ୍ମା ସର୍ବଦା ଏକରସ । ସବୁ ଝଗଡ଼ା ଏହି ଚିଦାଭାସର । ଏହା ଆତ୍ମା ନୁହେଁ, ଆତ୍ମା ଭଳି ଲାଗେ, ସେଥିପାଇଁ ତ ଏହାକୁ ଚିଦାଭାସ କୁହାଯାଏ । ଏହା ଯେତେବେଳେ ବିବେକର ଖଣ୍ଡାରେ କଟିଯିବ, ସେତେବେଳେ ଏହାର ବୃତ୍ତି ରୂପକ ଫଉଜ ବି ହାରମାନି ପଳେଇଯିବେ । ପୁନଶ୍ଚ ଦୁଃଖ, କାମନା, ଶୋକ, ମୋହ, ଭୟ ବି ରହିବ ନାହିଁ ।

ଯେମିତି ଲମ୍ୱା, ଚେପ୍‌ଟା, ଇତ୍ୟାଦିକୁ ଦର୍ପଣରେ ଦେଖିଲେ ଦର୍ଶକ ଲମ୍ୱା, ଚେପ୍‌ଟା, ପତଳା, ମୋଟା ଇତ୍ୟାଦି ପ୍ରତିଭାସିତ ହୋଇଥାଏ କିନ୍ତୁ ସେ ସେମିତି ହୁଏ ନାହିଁ । ଏହି କାରଣରୁ ଅନ୍ତଃକରଣ ଦର୍ପଣରୂପକ ବୃତ୍ତିରେ ଆତ୍ମ ବୃତ୍ତି ଅନୁରୂପ ହିଁ ସୁଖୀ-ଦୁଃଖୀ, କାମୀ, କ୍ରୋଧୀ, ମୂଢ, ଜ୍ଞାନୀ ଭଳି ପ୍ରତୀତ ହୋଇଥାଏ । କିନ୍ତୁ ଆତ୍ମା ବୃତ୍ତି ଅନୁରୂପ ତ ପ୍ରତିଭାସିତ ହୋଇଥାଏ, ମାତ୍ର ସେପରି ହୁଏନାହିଁ ଏବଂ ଏହି ପ୍ରତି ମୁହୂର୍ତ୍ତରେ ବାରମ୍ୱାର ବଦଳୁଥିବା ଚିଦାଭାସ ଜୀବ ହେଉଛି ମିଥ୍ୟା ମୁଁ । ଏହା ଅନ୍ତଃକରଣର ଧର୍ମଗୁଡ଼ିକ ସହିତ ମିଶି ନିଜକୁ କର୍ତ୍ତା-ଭୋକ୍ତା, ସୁଖୀ-ଦୁଃଖୀ, ମୁର୍ଖ-ଜ୍ଞାନୀ ଇତ୍ୟାଦି ଭାବରେ ମାନି ନେଇଥାଏ ।

ଯେମିତି କର୍ଣ୍ଣ ପ୍ରକୃତ ଭାଇ ହୋଇଥିଲେ ବି କୌରବମାନଙ୍କର, ଶତ୍ରୁମାନଙ୍କ ତରଫରୁ ଲଢିବା ପାଇଁ ଛିଡ଼ା ହେଲେ, ସେହିପରି ଚିଦାଭାସ ଚିଦାତ୍ମାର ପ୍ରକୃତ ଭାଇ ହୋଇଥିଲେ ବି ବିକାରୀ ଅନ୍ତଃକରଣ ସହିତ ଯାଇ ମିଶିଯାଇଛି । ଯେତେବେଳେ ତାଙ୍କୁ କୌଣସି ଗୁରୁଙ୍କ କୃପାରୁ ତାହାର ବାସ୍ତବ ସ୍ୱରୂପ ବତେଇ ଦିଆଯିବ, ସେତେବେଳେ ଏହି ଅନ୍ତଃକରଣ ଯେଉଁଠି ପ୍ରତିବିମ୍ୱିତ ହେଉଛି, ଅହଂକାର ଭାଙ୍ଗି ଯାଇ ବିମ୍ୱ ଆତ୍ମାରେ ଏହା ଅଛି, ସେଥିରେ ସୋଽହଂ ନିଶ୍ଚୟ କରି ପରମାନନ୍ଦକୁ ପ୍ରାପ୍ତ ହୋଇପାରିବ ।

**ପ୍ରଶ୍ନ ୧୩୧– ଯଦି ଆମେ ପରିଚ୍ଛିନ୍ନ ଜୀବ ନୋହୁ ତେବେ କ'ଣ ଆମେ ସାକ୍ଷୀ ମାତ୍ର ?**

**ଉତ୍ତର** – ନାଁ । ତେବେ ଆମେ ନିଜକୁ ସାକ୍ଷୀ ବି କହିପାରିବା ନାହିଁ । ସାକ୍ଷୀ ଭାବ ରହୁଥିବାରୁ ଏବଂ ଭାଙ୍ଗୁଥିବାରୁ ତାହା ବି ନିତ୍ୟ ନୁହେଁ । ଯେତେବେଳେ କୌଣସି ପ୍ରକାରର ବୃତ୍ତିଗୁଡ଼ିକ ଉଠେ ସେତେବେଳେ 'ମୁଁ ଜାଣେ', 'ମୁଁ ବିଚାର କରେ' ଏସବୁ ହେଉଛି ବୁଦ୍ଧିର ବୃତ୍ତି ଏବଂ ସେହି ବୁଦ୍ଧି ବୃତ୍ତିଗୁଡ଼ିକର ଉଦୟ-ଅସ୍ତ, ଉଠିବା-ନଷ୍ଟ ହେବାକୁ ଜାଣିବାବାଲା ବି କେହି ନିଶ୍ଚୟ ଅଛନ୍ତି । ବର୍ତ୍ତମାନ ବୃତ୍ତିର ସାକ୍ଷୀ କେବେ ହେଲା ? ଯେତେବେଳେ ବୃତ୍ତି ଉଦୟ ହୋଇଛି ବିନା ବୃତ୍ତିରେ ସୁଷୁପ୍ତିରେ ସେ'ତ ଅଛି କିନ୍ତୁ ସେତେବେଳେ ସେ' ସାକ୍ଷୀ ସଞ୍ଜ୍ଞାଧାରୀ ହୋଇନଥାଏ । ମାତ୍ର ଯାହା ବୃତ୍ତିରେ ଅଛି, ତାହା ମାୟିକ, ପ୍ରାକୃତିକ । ଏଣୁ ତାହାର ସାକ୍ଷୀ ।

ସାକ୍ଷୀକୁ ଉପଦ୍ରଷ୍ଟା ବି କୁହାଯାଏ, ଯାହା ଉଦାସୀନ ବି ହୋଇଥାଏ ଏବଂ ଦୂରରେ ବି ରହେନାହିଁ । ଯେମିତି ଯଜ୍ଞଶାଳାରେ ଜଣେ ପଣ୍ଡିତ ଉପଦ୍ରଷ୍ଟା ହୋଇ ବସି ରହିଥାନ୍ତି ବା ଯେମିତି ଦଲାଲ୍ ମାଲ୍ ଖରିଦ୍ କରୁଥିବା ଲୋକ ଓ ବିକ୍ରିକଲାବାଲାକୁ ଜାଣିଥାଏ । ନା, ସେ ନିଜେ ଖରିଦ୍ କରେନାହିଁ, ବିକ୍ରି କରେ ନାହିଁ, ସେ ଉଭୟଙ୍କ ମଝିରେ ରହିଥାଏ ।

ବୃତ୍ତି ଦ୍ୱାରା ନିଜକୁ ପୃଥକ୍ ମାନିନେଲେ ବି ନିଜ ଠାରେ ପରିଚ୍ଛିନ୍ନତା ଆସେ ନାହିଁ କାରଣ ବୃତ୍ତି ବି ସ୍ୱୟଂ ତାହା ଦ୍ୱାରା ପ୍ରକାଶିତ ହୋଇଥାଏ । ସେ ନିଜକୁ ପ୍ରତ୍ୟେକ ବୃତ୍ତି ଠାରୁ ଅସଙ୍ଗ ଏବଂ ପ୍ରକାଶକ ଭାବରେ ମାନିଥାଏ ।

ପରିଚ୍ଛିନ୍ନତା ଭିତରକୁ ଆସିବା ହିଁ ଆତ୍ମହତ୍ୟା । ଏହା ସବୁଠାରୁ ବଡ ପାପ । ଯାହାର କୌଣସି ପ୍ରାୟଶ୍ଚିତ ବେଦରେ ନାହିଁ, କାରଣ ପ୍ରତ୍ୟେକ ପ୍ରାୟଶ୍ଚିତ୍ତର ବୃତ୍ତି ବି ତ ହେଉଛି ପରିଚ୍ଛିନ୍ନତା । ଏଣୁ ଯଦି ପ୍ରାୟଶ୍ଚିତ କରିବାକୁ ଚାହଁ ବା କର ତଥାପି ସୁଦ୍ଧା ତାହା ପରିଚ୍ଛିନ୍ନତା ଭିତରେ ହିଁ ରହିଯାଏ, ସେଥିରୁ ରକ୍ଷା ପାଏ ନାହିଁ ।

ଯେମିତି ଆକାଶ ସର୍ବଂଗତ ସେହିପରି ଯଜ୍ଞ ଜ୍ଞାନ ସ୍ୱରୂପ ଆତ୍ମା ଅର୍ଥାତ୍ ଆମର ସ୍ୱରୂପ ନିଜେ ନିଜର ସର୍ବଂଗତ । ପୁନଶ୍ଚ କେଉଁଠୁ ଏବଂ କାହା ଠାରୁ ପରିଚ୍ଛିନ୍ନତା ଆସିପାରିବ ଅଥବା କୌଣସି କର୍ତ୍ତୃତ୍ୱର ଭାବନା ଆସିପାରିବ ? ଯାହା ବିନା ଏହି ଭାବ ବୃତ୍ତି ଛିଡ଼ା ହୋଇପାରିବ ନାହିଁ, ସେଥିରେ କର୍ତ୍ତୃତ୍ୱ ରହିପାରିବ ନାହିଁ । ସେ ଏସବୁ ଠାରୁ ଅଛୁଆଁ ହୋଇ ରହିଥାଏ, ଯେମିତି ସୂର୍ଯ୍ୟ ସବୁ ପଦାର୍ଥଗୁଡ଼ିକୁ ପ୍ରକାଶିତ କରି ବି ସବୁଠାରୁ ଅଛୁଆଁ ଭଳି ରହିଥାନ୍ତି ।

ତୁମେ ହେଉଛ କେବଳ ଦ୍ରଷ୍ଟା । ମାତ୍ର ଆମେ ବି ଭୋକ୍ତା ହୋଇ କହିଥାଉ ଯେ, ଆନନ୍ଦ ଆସିଲା ନାହିଁ, ଆଜି ବହୁତ ମଜା ଲାଗିଲା । ଯେ ବି ଦ୍ରଷ୍ଟା ହେବ, ସେ ଅଲଗା ରହିବ । ଯେ ଭୋକ୍ତା, ସେ ଦ୍ରଷ୍ଟା ହୋଇପାରିବ ନାହିଁ । ଏଣୁ ପାରୁଛ ତ ଦ୍ରଷ୍ଟା ହୋଇଯାଅ ବା ଭୋକ୍ତା । ଉଭୟ ଏକା ସାଙ୍ଗରେ ରହିପାରିବେ ନାହିଁ । ଯେମିତି କୌଣସି କାର୍ଯ୍ୟର ହୁଏତ କର୍ତ୍ତା ହୋଇଯାଅ ବା ସାକ୍ଷୀ, ଗୋଟିଏ କ୍ରିୟାର କର୍ତ୍ତା ଏବଂ ସାକ୍ଷୀ ଉଭୟ ହୋଇପାରିବ ନାହିଁ । ମାତ୍ର ଏହା ଭୋକ୍ତା ଦ୍ରଷ୍ଟା ଉଭୟ ହୋଇଯାଇ ଜୀବ ଭାବରେ ବାନ୍ଧି ହୋଇଯାଏ ।

**ପ୍ରଶ୍ନ ୧୩୨– ଯେତେବେଳେ ଏହା ପରିଚ୍ଛିନ୍ନ ଜୀବ ବି ନୁହେଁ ଏବଂ ସାକ୍ଷୀ ବି ନୁହେଁ, ତେବେ ପୁଣି ସ୍ୱରୂପର ପରିଚୟ କେମିତି ହେବ ?**

**ଉତ୍ତର–** ଏହି ସ୍ୱରୂପପ୍ରାପ୍ତି, ସ୍ୱରୂପ ସାକ୍ଷାତ୍କାରର ବିଚାରଗୁଡ଼ିକରୁ ମୁକ୍ତ ରହିବା ହିଁ ସ୍ୱରୂପ ସ୍ଥିତି । ଯଦି ସାକ୍ଷାତ୍ ବ୍ରହ୍ମ ଦେଖିବାକୁ ଅଛି, ତେବେ ଗୋଟିଏ ଛୋଟ ପିଲାକୁ ଦେଖି ଅନୁମାନ କରିପାରିବ । ଯେଉଁ ସମୟରେ ସେ କାନ୍ଦୁଛି, ସେହି ସମୟରେ ତାକୁ ଭୁଲାଇଦେଇ ହସାଇ ଦିଆଯାଇଥାଏ । ଲୁହ ଆଖିରେ ବି ଲାଖି ରହିଥାଏ ତଥାପି ସେ ଖେଳିବାରେ ଲାଗିଯାଏ । ଯଦି ତୁମେ ସେହି ଭଳି ଅସଙ୍ଗ ଏବଂ ସମାହିତ ହେଉଛ ତେବେ ତୁମେ ଶାନ୍ତ, ବ୍ରହ୍ମ । ନଚେତ୍ କୌଣସି ବି ବୃତ୍ତି

ତିଆରି କରିବ ତ ପୁଣି ସେହି ଅଧ୍ୟାସ ହିଁ ସେହି ବୃତ୍ତିର ସାଥୀ ହୋଇଯିବ ଯେ – ଏହା ମୁଁ, ଏହା ମୁଁ ନୁହେଁ ।

ତେଣୁ ସେ କେବେ ମିଳିବେ ଏହି ପ୍ରକାରର ଅଲଗା ଭାବ ନିଜ ଆଗରେ ପ୍ରକଟ ହେବାକୁ ଦିଅନା– ତାହା ହିଁ ବ୍ରହ୍ମତ୍ୱ । ମାତ୍ର ଏହିଭଳି ବୃତ୍ତିର ଅଭାବକୁ ବି ତୁମେ ଜାଣିଛ । ତୁମର ହେବା, ବୃତ୍ତିର ଅଭାବ ପାଇଁ ଅପେକ୍ଷା ରଖେନା । ସେ ସ୍ୱତଃ ସିଦ୍ଧ ଏବଂ ନିତ୍ୟ । ଏଣୁ ବ୍ରହ୍ମତା କୌଣସି ପ୍ରକାର ବିଷୟ ବୃତ୍ତି ଅବସ୍ଥାର ହେଲେ ବି କୌଣସି ପ୍ରତିବନ୍ଧକ ହୁଏ ନାହିଁ । ବରଂ ସବୁ ଅବସ୍ଥା, ବୃତ୍ତି ସେହି ସ୍ୱୟଂସିଦ୍ଧ ବ୍ରହ୍ମ ଦ୍ୱାରା ହିଁ ସିଦ୍ଧ ହୋଇଥାଏ । ଜାଣିବା ଏବଂ ନ ଜାଣିବାକୁ ବି ଯେ ଜାଣେ, ସେହି ଆତ୍ମା ହିଁ ତୁମେ । 'ତତ୍ତ୍ୱମସି' ।

**ପ୍ରଶ୍ନ ୧୩୩– ଜ୍ଞାନୀ ଜୀବନର କ୍ରିୟାଗୁଡ଼ିକରେ କେମିତି ଟିକ୍ଷି ରହନ୍ତି ?**

**ଉତ୍ତର –** ଜ୍ଞାନୀଙ୍କର ପ୍ରବୃତ୍ତି ପ୍ରାରବ୍ଧ ଅନୁସାରେ ପୂର୍ବରୁ ଯେମିତି ନିର୍ଦ୍ଧାରିତ ହୋଇଛି, ସେହି ଅନୁସାରେ ରାଗ–ଦ୍ୱେଷ, ଭେଦ ରହିତ ପ୍ରକୃତି ଦ୍ୱାରା ହୋଇ ଚାଲିଥାଏ । ସେହି ଭଲ ମନ୍ଦ କ୍ରିୟାଗୁଡ଼ିକ ହେଉଥିଲେ ବି ସେଥିରେ କର୍ତ୍ତୃତ୍ୱ ଏବଂ ଭୋକ୍ତୃତ୍ୱ ନଥାଏ । ଅନ୍ୟ ଲୋକର ଦୃଷ୍ଟିରେ ସେ କର୍ତ୍ତା ଏବଂ ଭୋକ୍ତା ଭାବରେ ପ୍ରତୀତ ହୋଇଥାନ୍ତି । ମାତ୍ର ଜ୍ଞାନୀ ନିଜ ଦୃଷ୍ଟିରେ ପ୍ରବୃତ୍ତ ହୁଅନ୍ତି ନାହିଁ । ସେ ଜାଣିଥାନ୍ତି ଯେ, ସୁଖ–ଦୁଃଖର ଧର୍ମବୁଦ୍ଧି ହେଉଛି ଉପାଧିର ଧର୍ମ ।

ସେହି ପ୍ରାରବ୍ଧ ଭୋଗ ଅନୁକୂଳ ବା ପ୍ରତିକୂଳ, ଭଲ ବା ମନ୍ଦ, ଆସୁଛି ବା ଯାଉଛି– ମୋର ସେଥିରେ କୌଣସି ସମ୍ବନ୍ଧ ନାହିଁ । ତତ୍ତ୍ୱଦୃଷ୍ଟିରୁ ସ୍ୱୟଂ ନିଷ୍କ୍ରିୟ ହୋଇଥିବାରୁ, ନିତ୍ୟ ଯୁକ୍ତ ହୋଇ ବି ସେ ନିର୍ଲିପ୍ତ ।

ଯଦି ଜ୍ଞାନୀଙ୍କ ପ୍ରାରବ୍ଧ ଦୋଷାନୁସାରେ କୌଣସି ଦୋଷଯୁକ୍ତ କ୍ରିୟା, ଅସାମାଜିକ କାର୍ଯ୍ୟ ହୋଇଯାଏ, ତଥାପି ସୁଦ୍ଧା ଜ୍ଞାନୀଙ୍କ ମନରେ ସେହି କର୍ମ ପ୍ରତି କର୍ତ୍ତୃତ୍ୱାଭିମାନ ନଥିବାରୁ ତାଙ୍କର ଜ୍ଞାନ ଏବଂ ମୁକ୍ତିର ଫଳ ନାଶ ହୁଏ ନାହିଁ । କାରଣ ତାଙ୍କର ବିବ୍ରତ ହେବାର ବୋଧ ହିଁ ନଥାଏ । ସେହିପରି ଥିଲେ ପରମହଂସ ଶୁକଦେବ ଏବଂ ବ୍ୟାସଦେବ ।

**ପ୍ରଶ୍ନ ୧୩୪– ଜୀବ ଭାବ କ'ଣ ?**

**ଉତ୍ତର –** ଯେତେବେଳେ ନିଜେ ନିଜକୁ ଛାଡ଼ିଦେଇ ଅନ୍ୟ କୌଣସି ଭାବ ସାଙ୍ଗରେ ଜଡିତ ହୋଇଯାଏ, ପ୍ରକୃତି ସହିତ ସଂଯୁକ୍ତ ହୋଇଯାଏ, ତାହା ହିଁ ହେଉଛି ଜୀବଭାବ, ତାହା ହିଁ କର୍ମର କାରଣ ଏବଂ ତାହା ହିଁ ଫଳ ଭୋଗ କରିବାର ହେତୁ, ତାହା ବି ଜନ୍ମ–ମରଣର କାରଣ । ପ୍ରକୃତି ପୁରୁଷର ସଂଯୋଗ ସମ୍ବନ୍ଧ

ଦ୍ୱାରା ଜୀବଭାବ ଛିଡ଼ା ହୋଇଯାଏ ।

ଜନ୍ମ-ମରଣର କାରଣ ଆତ୍ମା ନୁହେଁ, ଶରୀର ବି ନୁହେଁ, ପ୍ରକୃତି ବି ନୁହେଁ, କ୍ରିୟା ବି ନୁହେଁ ବରଂ ପ୍ରକୃତିଦତ୍ତ କ୍ରିୟାରେ କର୍ତ୍ତୃତ୍ୱ ବୁଦ୍ଧି ହିଁ ତାହାର ଏକମାତ୍ର ହେତୁ ।

ଯଦି ଏଠାରେ ସାମାନ୍ୟ ପରିମାଣରେ ସାବଧାନତା ଅବଲମ୍ବନ କରି ନିଆଯାଏ ଅର୍ଥାତ୍ କର୍ମରେ କର୍ତ୍ତାଭାବର ଅହଂକାର ନ ରହେ, ତେବେ ନା ସେ କର୍ମ ହୋଇପାରିବ ନା ଫଳ ହୋଇପାରିବ ? ଏତେ ଲମ୍ବା ଝଗଡ଼ା ହିଁ ଉତ୍ପନ୍ନ ହେବ ନାହିଁ ।

ଏଣୁ ସାମାନ୍ୟ ପରିମାଣରେ ଦ୍ୱୈତ ଭାବ ଆସିବାକୁ ଦିଅ ନାହିଁ । ଏହା ଚିନ୍ତାକର ନାହିଁ ଯେ, ମୁଁ ହିଁ ବ୍ରହ୍ମ, ମୁଁ କ୍ରିୟା କରିବି ତ ମୋତେ ବନ୍ଧନ ଲାଗିବ ନାହିଁ । ପ୍ରଥମେ ତ ମୁଁ ବ୍ରହ୍ମ ଏହିପରି ମାନିନେବାରେ ବି ପ୍ରକୃତିର ତୁମ (ପୁରୁଷ) ସହିତ ସଂଯୋଗ ହୋଇଗଲା । ପୁନଶ୍ଚ ଯଦି ତୁମେ ବ୍ରହ୍ମ ତେବେ ବ୍ରହ୍ମରେ ନା କୌଣସି ଅଭାବ ଅଛି ନା କର୍ମ ଅଛି । କୌଣସି ପ୍ରକାରର ପ୍ରବୃତ୍ତିର ଅବକାଶ ତ ଦ୍ୱୈତରେ ଥାଏ । ଯେତେବେଳେ ପ୍ରକୃତି ଏବଂ ପୁରୁଷ (ଆତ୍ମା)ର ସମ୍ବନ୍ଧ ହିଁ ନାହିଁ, ସେତେବେଳେ ଆଗକୁ ଭେଦଭାବ ଏବଂ ବ୍ୟାପ୍ତି ବି ହେବ ନାହିଁ । କେବଳ ସେ ରହିଗଲା । ବାସ୍, ସେ ଅଛି, ଏହା ନାହିଁ । ପ୍ରଥମେ ବି ସେ ଥିଲା, ବର୍ତ୍ତମାନ ବି ସେ ରହିଗଲା, ମଝିରେ ବି ସେ ଥିଲା । ମାତ୍ର ଭ୍ରାନ୍ତି ଯୋଗୁ ତାହାକୁ ହିଁ ଦ୍ୱୈତ ରୂପରେ ମାନି ନେଉଥିଲୁ, ଦ୍ୱୈତ ନଥିଲା, ସେ ଥିଲା । ମାତ୍ର ଦ୍ୱୈତକୁ ନ ଆସିବା ବିନା ଜ୍ଞାନ ହୁଏ ନାହିଁ ।

ନିରାକାର ପରମାତ୍ମାଙ୍କ ଦର୍ଶନ ହେବାର ପ୍ରଶ୍ନ ବି ଉଠେ ନାହିଁ । ନିରାକାର ଆକାଶର ଲକ୍ଷ ଲକ୍ଷ ପୂଜା, ପ୍ରାର୍ଥନା କର, ସେ କେବେ ହେଲେ ସାକାର ମୂର୍ତ୍ତି ରୂପ ହୋଇପାରିବ ନାହିଁ । ଯେ ବି ସାକାର ହେବ, ସେ ନାଶବାନ୍ ହେବ । ଯଦି ପରମାତ୍ମା ଗୋଟିଏ ଆକାର ଧାରଣ କରନ୍ତି, ତେବେ ବାକୀ ରହୁଥିବା ଆକାରରେ ପୁଣି କିଏ ରହିବେ ?

ଆକାଶ ସବୁ ଭୂତରେ ରହିଥାଇ ବି ସେମାନଙ୍କ ଗୁଣରେ ଲିପ୍ତ ହୁଏ ନାହିଁ, କାରଣ ସେ ସ୍ୱୟଂ ତ ସବୁ କିଛି । ପୁନଶ୍ଚ ଆତ୍ମା ବି କେମିତି କୌଣସି ବିଷୟ, ବୃତ୍ତି ଅଥବା ଇଚ୍ଛା, ବାସନାରେ ଲିପ୍ତ ହୋଇପାରିବ ? ଯେତେବେଳେ କି ସ୍ୱୟଂ ହିଁ ହେଉଛି ସେହି କର୍ମର, ଅନୁଭୂତିର କାରଣ । କୌଣସି ପଦାର୍ଥ ଏମିତି ନାହିଁ ଯାହା ଆତ୍ମା ନୁହେଁ । ତାହାର ନାମକୁ ତ କେବଳ ବ୍ୟବହାର ପାଇଁ ପଦାର୍ଥ ରଖି ଦିଆଯାଇଛି, କାରଣ ପ୍ରତ୍ୟେକ ବସ୍ତୁକୁ ଆତ୍ମା ଆତ୍ମା ବୋଲି କହିଦେଲେ କାମ

ଚଳିବ ନାହିଁ । ଯେମିତି ସବୁ ଅଳଂକାର ସ୍ୱର୍ଣ୍ଣ କିନ୍ତୁ ବ୍ୟବହାରରେ ଚଳାଇବା ପାଇଁ ଭିନ୍ନ ଭିନ୍ନ ନାମରେ କଳ୍ପନା କରାଯାଇଛି । କେବଳ ସ୍ୱର୍ଣ୍ଣ–ସ୍ୱର୍ଣ୍ଣ କହୁଥିଲେ ତ କୌଣସି ଅଳଂକାରର ଗ୍ରହଣ, ତ୍ୟାଗ ହୋଇପାରିବ ନାହିଁ । ଯେତେବେଳେ ସାରା ଜଗତ ହିଁ ବ୍ରହ୍ମ ସେତେବେଳେ ସବୁ ରୂପରେ ତ ସେ ପ୍ରକଟ ହେଉଛନ୍ତି । ଆକାଶ ଗରୀବ, ଧନୀର ମହଲ ବା କୁଡିଆ ଭିତରେ ପ୍ରଭେଦ ରଖେ ନାହିଁ ।

ମାତ୍ର ଆମ୍ଭେମାନେ କେତେବେଳେ କେତେବେଳେ ଏହି ଚିନ୍ତା କରିବାରେ ଲାଗିଯାଉ ଯେ ବର୍ତ୍ତମାନ କ୍ରୋଧ ଆସୁଛି, ଲୋଭ ହେଉଛି, କାମ ଚିନ୍ତା କାହିଁକି ହୋଇଯାଉଛି ? ଯଦି ଆତ୍ମଜ୍ଞାନ ହୋଇଯାନ୍ତା, ଦେହଭାବ ଚାଲିଯାନ୍ତା, ତେବେ ଏହି ବାସନା କାହିଁକି ହୁଅନ୍ତା ? ସବୁବେଳେ ସାକ୍ଷୀ ଅସଙ୍ଗ ଭାବ କାହିଁକି ରହୁନାହିଁ ? ନ ଚାହୁଁଥିଲେ ବି ଚଞ୍ଚଳତା କାହିଁକି ଆସିଯାଉଛି ? ଏହି ଜଗତ କାହିଁକି ଭାସିବାରେ ଲାଗିଛି ? ଇତ୍ୟାଦି ଇତ୍ୟାଦି । ମାତ୍ର ଆମେ ଏହି କଥା ଭୁଲିଯାଉ ଯେ, ସବୁ ଜାଗାରେ, ସବୁ ରୂପରେ, ସବୁ ଅବସ୍ଥାରେ ଏବଂ ପ୍ରତ୍ୟେକ କ୍ରିୟାରେ ତ ମୁଁ ହିଁ ରହିଛି । କେହି ହେଲେ ଏମିତି ବିଚାର, ମୁହୂର୍ତ୍ତ, କ୍ରିୟାର କଥା କହିଲ, ଯେତେବେଳେ ମୁଁ ରହୁନାହିଁ କିନ୍ତୁ ଏହି ବିଚାର କ୍ରିୟା ରହୁଛି ? ଯେତେବେଳେ ତାହା ମୋ ବିନା ରହୁନାହିଁ, ସେତେବେଳେ ଅସ୍ତିତ୍ୱ ମୋର ହେବ, ତା'ର ନୁହେଁ । ଯେମିତି ଦଉଡ଼ିରେ ସାପ ଭ୍ରାନ୍ତି ଯୋଗୁ ଦେଖାଯାଏ କିନ୍ତୁ ପ୍ରକୃତରେ ନଥାଏ, ସେହିପରି ଏହି ବିଚାର, ବୃତ୍ତି, କ୍ରିୟା ମୋ' ଠାରେ ନାହିଁ, ଭ୍ରାନ୍ତି ଯୋଗୁ ଦେଖାଯାଉଛି । ଏହି ଭାବରେ ଜ୍ଞାନୀ ନିଜକୁ ଜାଣିଥାନ୍ତି । ଏମିତି ନୁହେଁ ଯେ, ସେ ତାହାର ଅଭିଯୋଗ କରନ୍ତି, ଯାହା ତାଙ୍କ ଠାରେ ନାହିଁ ।

ଏହା ଠାରୁ ବଳି ଶ୍ରେଷ୍ଠ ଏବଂ ସରଳ କେଉଁ ଜ୍ଞାନ ହୋଇପାରିବ ? ଏହା ହିଁ ତ ଆତ୍ମା । ଏହା ହିଁ ତ ନିଜେ ନିଜକୁ ଜାଣିବା । ନଚେତ୍ ଏହି ଆତ୍ମାକୁ ବୁଝିବା ଭଳି ଅବସ୍ଥା ବୁଦ୍ଧିର ନାହିଁ । ଏହି ତତ୍ତ୍ୱ ଏତେ ସୂକ୍ଷ୍ମ ଯେ ଏହା ବୁଝିବା ପରିସରକୁ ଆସିପାରିବ ନାହିଁ । ଯଦି ବୁଝିବା ଭଳି କିଛି ଲାଗୁଛି, ତେବେ ତାହା ଆତ୍ମାର ନୁହେଁ, ବୃତ୍ତି ଦ୍ୱାରା ତିଆରି ହୋଇଛି । ଏହା ସ୍ୱରୂପ ଜ୍ଞାନ ନୁହେଁ । ଯେତେବେଳେ ବି କିଛି ବୁଝିହେଉଛି, ସେତେବେଳେ ତାହା ପରିଚ୍ଛିନ୍ନ ଭାବରେ ରହିଛି ।

ମାତ୍ର ତାହା ନିତ୍ୟ ବିଦ୍ୟମାନ 'ମୁଁ'କୁ ଜାଣେ ନାହିଁ, ଯେତେବେଳେ କି ଏହି 'ମୁଁ' ସବୁବେଳେ ଆଗେ ଆଗେ ହିଁ ରହିଥାଏ ଯେଉଁଠି କିଛି ବି ଦେଖାଯାଏ, ଶୁଣାଯାଏ, ଜଣାଯାଏ, ବନାଯାଏ, ଏହି 'ମୁଁ' ତା ପୂର୍ବରୁ ପ୍ରଥମେ ବିଦ୍ୟମାନ ଥିଲା । ପୁନଶ୍ଚ ଏହିଭଳି 'ମୁଁ'କୁ, ନିତ୍ୟ 'ମୁଁ'କୁ ଯାହା ସବୁ ଘଟଣା, ବିଚାର, କ୍ରିୟା ଆଗରେ ଅଛି, ତାକୁ କିଏ ଲିପ୍ତ କରିପାରିବ ବା ନଷ୍ଟ କରିପାରିବ, ନା ତାକୁ ବନ୍ଧନରେ

ପକାଇ ପାରିବ ? ଏହି ଜ୍ଞାନ ଦ୍ୱାରା ତ କୋଟି କୋଟି ଜନ୍ମର ଅସାଧ୍ୟ କର୍ମ ସବୁ ନଷ୍ଟ ହୋଇଯାଏ । ତାକୁ ଆଜି ପର୍ଯ୍ୟନ୍ତ କେହି ଛୁଇଁ ପାରିନାହାନ୍ତି କାରଣ ତାହା ବ୍ୟତୀତ ଅନ୍ୟ କେହି ନାହାନ୍ତି । ଏଣୁ ସେ ଯେଉଁ ପ୍ରକାରରେ ଥାଆନ୍ତୁ, ସେ' ହିଁ ଏକ ।

**ପ୍ରଶ୍ନ ୧୩୫– ସମ୍ୟକ୍ ଦୃଷ୍ଟି କାହାକୁ କୁହାଯାଏ ?**

**ଉତ୍ତର–** ଏକ ବ୍ରହ୍ମଙ୍କୁ ହିଁ ସର୍ବତ୍ର ଦେଖିବା, ବ୍ରହ୍ମଙ୍କ ବ୍ୟତୀତ ଅନ୍ୟ ସତ୍ତାକୁ ନିଶ୍ଚୟ ଦ୍ୱାରା ଅସ୍ୱୀକାର କରିବା ହିଁ ସମ୍ୟକ୍ ଦୃଷ୍ଟି । ସେଥିପାଇଁ କୁହାଯାଇଛି ସମ୍ୟକ୍ ଦୃଷ୍ଟି ରଖ ।

''ସିୟାରାମ୍ ମୟ ସବ ଜଗ ଜାନି'', ''ଜିତ ଦିଖୁଁ ତିତ ଶ୍ୟାମ'', ''ସର୍ବଂ ଖଲ୍ୱିଦଂ ବ୍ରହ୍ମ'' ଏସବୁ ହେଉଛି ଅନୁଭବୀ ଜ୍ଞାନୀ ସନ୍ଥମାନଙ୍କର ନିଷ୍ଠାର ପ୍ରତୀକ।

ସମ୍ୟକ୍ ଦୃଷ୍ଟିର ତାତ୍ପର୍ଯ୍ୟ ହେଉଛି, ନିଜେ ନିଜକୁ ସର୍ବତ୍ର ଭରପୂର ଭାବରେ ଦେଖିବା, ଏହାକୁ କୂଟସ୍ଥ ବ୍ରହ୍ମ ବି କୁହାଯାଏ, ଯେମିତି ମିଶ୍ରିର ସର୍ବତ୍ର ମିଠାପଣିଆ ହେଉଛି ତାହାର ଧନ, ସେହିପରି ସର୍ବତ୍ର ଆନନ୍ଦ ଘନ ବ୍ରହ୍ମ ହିଁ ଅଛନ୍ତି, ଅନ୍ୟ କିଛି ନାହିଁ । ନିଜେ ନିଜ ଠାରେ ପୂର୍ଣ୍ଣ ଦୃଷ୍ଟି ରଖିବା ଏବଂ ଅନ୍ୟ ସତ୍ତାକୁ ମନରେ ଅଭାବ ଭାବରେ ନିଶ୍ଚୟ କରୁଥିବା ଜ୍ଞାନୀ କେଉଁଠି ଆସକ୍ତ ହୁଅନ୍ତି ନାହିଁ କିମ୍ବା କାହାର ଇଚ୍ଛା କରନ୍ତି ନାହିଁ । ସେହି ଜ୍ଞାନୀଙ୍କ ପାଇଁ କୌଣସି ଅଭାବ ରହିନଥାଏ । ସର୍ବତ୍ର ନିଜକୁ ନିଜେ ଦେଖିଲେ, ସର୍ବତ୍ର ବ୍ରହ୍ମଙ୍କୁ ଦେଖିଲେ ଦ୍ୱୈତ ଭାବ ରହେନାହିଁ । ମୁଁ–ମୋର ଭାବ ଆଗକୁ ଆସିଗଲା ତ ଜୀବଭାବ ଛିଡ଼ା ହୋଇଗଲା, ସ୍ୱରୂପରୁ ଖସିଗଲା । ଏଣୁ ସର୍ବତ୍ର ସମଦୃଷ୍ଟି ରଖିବା ଉଚିତ । ଏହା ହେଉଛି ବନ୍ଧନ ନିବୃତ୍ତି ଏବଂ ଜୀବଭାବର ଲୟ ।

**ପ୍ରଶ୍ନ ୧୩୬– ଯଦି ମୁଁ, ଆତ୍ମା ଅସଙ୍ଗ, ଅକର୍ତ୍ତା, ଅଭୋକ୍ତା ତେବେ ଅନ୍ୟର ଅଭାବରେ କିଏ କର୍ତ୍ତା ଏବଂ ଭୋକ୍ତା ?**

**ଉତ୍ତର–** ଭୋକ୍ତା ପଣିଆର ହିଁ ଭ୍ରାନ୍ତି ହେଉଅଛି । ଆତ୍ମା ଶୁଦ୍ଧ ଏବଂ ଧର୍ମବିହୀନ ହୋଇଥିବାରୁ ନା ସେ କର୍ତ୍ତା ନା ଭୋକ୍ତା ? ପୁନଶ୍ଚ ଆତ୍ମା ହିଁ ସବୁ କିଛି, ଅଦ୍ୱୟ, ତେଣୁ କାହାର ଭୋଗ କରି ସେ ଭୋକ୍ତା ହେବ ? ଏଣେ ଆତ୍ମା ବିନା ଦେହ, ଇନ୍ଦ୍ରିୟ, ପ୍ରାଣ ତଥା ଅନ୍ତଃକରଣ ଇତ୍ୟାଦି ସମସ୍ତେ ଜଡ଼, ସେମାନେ ସ୍ୱତନ୍ତ୍ର ଭୋକ୍ତା ହୋଇପାରିବେ ନାହିଁ । ଏଣୁ ଅନ୍ତଃକରଣ, ଦେହ ସଂଘାତ ଏବଂ ଆତ୍ମାର ମିଳନରୁ ଉତ୍ପନ୍ନ ଚିଦାଭାସ ହିଁ ତାହା ହୋଇପାରିବ, ଅନ୍ୟ କିଛି ନୁହେଁ । ଦ୍ୱୈତର ଅଭାବରେ ଭୋକ୍ତା କେବଳ ଭ୍ରାନ୍ତି ମାତ୍ର ।

ଚେତନର ଜଡ଼ ସହିତ କେବେ ହେଲେ ସମ୍ବନ୍ଧ ହୋଇପାରିବ ନାହିଁ, ଯେମିତି ସୂର୍ଯ୍ୟଙ୍କର ରାତ୍ରି ସହିତ ସମ୍ବନ୍ଧ ନଥାଏ । ମାତ୍ର ଏହା, ଯାହା ମିଶିଗଲା ଭଳି ପ୍ରତୀତ ହୋଇଥାଏ, ମନ ରୂପରେ ନିଜେ ନିଜର ଭଳି ପ୍ରତୀତ ହୋଇଥାଏ, ତାହା ଚିଦାଭାସ । ତାହାକୁ ଜୀବ କୁହ, ମନ କୁହ, ଆଭାସ କୁହ ବା ଏ ସବୁର ସମଷ୍ଟି କୁହ, ସେ' ହିଁ ଭୋକ୍ତା । ଏହା ଠାରୁ ସେ ଅଲଗା, ଶୁଦ୍ଧ, ଧର୍ମହୀନ ଥାନ୍ତି, ତାହାଙ୍କୁ ଭୋକ୍ତା କୁହାଯାଇପାରିବ ନାହିଁ । କିନ୍ତୁ 'ସେ ଅଲଗା'– ଏହାକୁ ବି ତ ମନ, ଇନ୍ଦ୍ରିୟମାନେ ହିଁ କହୁଛନ୍ତି । ଏବଂ ଯାହା କିଛି ବି ଏହିଭଳି ଭାବରେ ଚିନ୍ତା କରାଯାଉଛି, ସେସବୁ ଆତ୍ମାର ରୂପ, ଆତ୍ମା ନୁହେଁ ।

ଯେପର୍ଯ୍ୟନ୍ତ କୌଣସି ପ୍ରକାର ବିଚାର ସଜାତୀୟ, ବିଜାତୀୟ ରହିବ, କଳ୍ପନା ରହିବ, ତାହାର ଜ୍ଞାତା, ଦ୍ରଷ୍ଟା ମନ ବି ତାହା ସହିତ ରହିବ । ନଚେତ୍ ତାହା ବିନା, କେବଳ ଚେତନ ଦ୍ୱାରା କୌଣସି ବିଚାର ବି ଉଠିପାରିବ ନାହିଁ । ଯେତେବେଳେ ବିଚାର ରହେ ନାହିଁ, ସେତେବେଳେ ଆମେ କିଛି ହେଲେ ଭାବ ପ୍ରକଟ କରି ପାରିବା ନାହିଁ । କହିବା ବି ସମ୍ଭବ ହୋଇପାରିବ ନାହିଁ । ଖାଇବା ପିଇବା ବି ମନର ଉପସ୍ଥିତି ଯୋଗୁ ସମ୍ଭବ ହୋଇଥାଏ । ମନ ମୂର୍ଚ୍ଛିତ ହେଲା ପରେ କିଛି ହେଲେ କ୍ରିୟା ସମ୍ଭବ ହୋଇପାରେ ନାହିଁ, ଯଦିଓ ଆମର ଅଭାବ ହୁଏନାହିଁ, ଆମର ଅସ୍ତିତ୍ୱ ଯେମିତି କି ସେମିତି ତିଷ୍ଠି ରହିଥାଏ । ମାତ୍ର ମନ, ବୁଦ୍ଧି ଚିଦାଭାସ ଜୀବର ଅଭାବରେ କୁହାଯାଇ ପାରିବ ନାହିଁ, ଯେ ଏମିତି ନୁହେଁ । ଯଦି କହିବ, ତେବେ ତାହା ପୁଣି କୌଣସି ବିଚାର ହୋଇଯିବ, ଆରୋପ ହୋଇଯିବ । ଯଦିଓ ଆମର ସ୍ୱରୂପ ମନ, ବାଣୀର ବିଷୟ ନୁହେଁ, ଯାହାକୁ ଦୃଷ୍ଟି ମାଧ୍ୟମରେ ଦେଖାଯାଇ ପାରିବ ନାହିଁ, ତଥାପି ସୁଦ୍ଧା ତାହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ, କାରଣ ସେଥିରେ ହିଁ ତ ସବୁକିଛି ଦେଖାଯାଉଅଛି । ସେହିପରି ଆତ୍ମା ଦେଖିବା, ଜାଣିବାର ବିଷୟ ନୁହେଁ ତଥାପି ସୁଦ୍ଧା ତାହାର ଅସ୍ତିତ୍ୱକୁ ଅସ୍ୱୀକାର କରାଯାଇ ପାରିବ ନାହିଁ, କାରଣ ତାହାର ସତ୍ତା ଯୋଗୁ ସବୁ କିଛି ଦେଖାଯାଉଛି, ଜଣାଯାଉଛି, ବୁଝାଯାଉଛି । ଅର୍ଥାତ୍ ସେ କେବେ ନଥିଲେ ? ସେ ଆମର ନିତ୍ୟ, ଏକରସ, କୂଟସ୍ଥ ଆତ୍ମସ୍ୱରୂପ । ବାସ୍ତବରେ ଅଭୋକ୍ତାକୁ ବାଣୀ ମାଧ୍ୟମରେ କୁହାଯାଇପାରିବ ନାହିଁ ।

ଯେତେବେଳେ ଆତ୍ମା ସ୍ୱୟଂ ସବୁ କିଛି ସେତେବେଳେ ସେ କାହାକୁ ଭୋଗ କରିବ ? ଅର୍ଥାତ୍ ଏହି ଧର୍ମ-ଅଧର୍ମ ବା ସୁଖ-ଦୁଃଖ ଭୋଗ କରିବା ବା ନ କରିବା କାମ ସେହି ମନ, ଇନ୍ଦ୍ରିୟର । ସେମାନେ ହିଁ ତାହାର ଭୋକ୍ତା । ଏଣୁ ଭୋକ୍ତା ହେଲା ସଂଘାତ ମାତ୍ର, ସେଥିରେ ବି ଯେ ବ୍ୟାପ୍ତ ଏବଂ ଅଲଗା, ସେ

ଅଭୋକ୍ତା, ସେ ଆତ୍ମା । ଉପାଧି ଦ୍ୱାରା ହିଁ ଭୋଗ ହେବ, ଆତ୍ମା ଉପାଧିଯୁକ୍ତ ହୋଇଥିଲେ ବି ଭୋକ୍ତା ନୁହଁନ୍ତି ।

ହୁଏତ ଶୁଭାଶୁଭ ସଂକଳ୍ପ ଉଦୟ ହେଉଥାଉ, ତୁମେ ପ୍ରକାଶକ ହେଉଛ ଅସଙ୍ଗ ଏବଂ ପବିତ୍ର । ସେମାନେ ତୁମର ଆଲୋକରେ ହିଁ ପ୍ରକାଶିତ ହୋଇପାରିଲେ, ନଚେତ ସେମାନଙ୍କର ଗନ୍ଧ ବାସ୍ନା ବି ମିଳନ୍ତା ନାହିଁ । ପୁନଶ୍ଚ ତୁମର ଅଧୀନ, ଶରଣାଗତ, ଉପଜୀବୀମାନଙ୍କ ଦ୍ୱାରା ବି ତୁମର କ'ଣ କ୍ଷତି ହୋଇପାରିବ ?

ବରଂ ସଂକଳ୍ପଗୁଡ଼ିକ ରହିବା ବି ଆବଶ୍ୟକ, ବିନା ମନରେ ଜ୍ଞାନ ସ୍ୱରୂପ ଆତ୍ମାର ବି ଠିକଣା ମିଳନ୍ତା ନାହିଁ, କାରଣ ଆତ୍ମା ତ ନିର୍ଗୁଣ, ନିରାକାର, ତାଙ୍କର ନିଜ ମାଧ୍ୟମରେ ନିଜ ସମ୍ବନ୍ଧରେ ଜ୍ଞାନ ହେବା ସମ୍ଭବ ହୁଅନ୍ତା ନାହିଁ ।

ବରଂ ତୁମେ ହିଁ ସବୁ ବିଚାର, ସଂକଳ୍ପ, ସବୁ ଦୃଶ୍ୟ ରୂପରେ ଥାଅ । ଯେତେବେଳେ ଏହିଭଳି ସର୍ବାତ୍ମ ଦୃଷ୍ଟି ହୋଇଗଲା, ଯେତେବେଳେ ବିଷୟ, ଇଚ୍ଛା କରୁଥିବା ମନ ଆତ୍ମାରୂପ ହୋଇଗଲା, ସେତେବେଳେ ତୁମେ ମୁକ୍ତ ହୋଇଛ, ପବିତ୍ର ହୋଇଛ । ଏହା ହିଁ ସର୍ବାତ୍ମ ଦୃଷ୍ଟି ବା ସମ୍ୟକ୍ ଦୃଷ୍ଟି ।

**ପ୍ରଶ୍ନ ୧୩୭– ଆମ ଦୁଃଖ ଗୁଡିକର କାରଣ କ'ଣ ?**

**ଉତ୍ତର–** ଯେତେବେଳେ ଆମେ ନିଜ ନିଜର ନିଷ୍କ୍ରିୟ, ନିରାକାର, ଅସଙ୍ଗ, ଆତ୍ମସ୍ୱରୂପକୁ କୌଣସି ଅନ୍ୟ ଭାବରେ ଗ୍ରହଣ କରୁ, ସେହି ପ୍ରକୃତିରେ ଅହଂକାର କରିନେଉ, ସେତେବେଳେ ଦୁଃଖ ଉତ୍ପନ୍ନ ହୋଇଥାଏ । ଶରୀର ଦୃଷ୍ଟିକୁ ସ୍ୱୀକାର କରି ନେଉଥିବା ଯୋଗୁ ହିଁ ସବୁ ଭେଦ ଭାସି ଉଠୁଛି । ଶରୀର ଦୃଷ୍ଟି ଚାଲିଗଲା ପରେ ନା କିଛି ଦେଖିବା, ଦେଖାଇବା ପାଇଁ ରହିଲା ନା କିଛି କ୍ରିୟା ରହିଲା । ଏହିଭଳି ସ୍ଥିତିକୁ ବ୍ରାହ୍ମୀ ସ୍ଥିତି କୁହାଯାଏ । ଏହା ଆମର ସ୍ୱତଃସିଦ୍ଧ ସ୍ୱାଭାବିକ ସ୍ଥିତି । ମାତ୍ର ଯେତେବେଳେ ଆମେ ତାହାକୁ ତିଆରି କରିବା ପଛରେ ପଡିଯାଉ, ସେତେବେଳେ ତାକୁ ବିଗାଡ଼ିବାରେ ଲାଗିଥାଉ ।

ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି ଇତ୍ୟାଦି ପ୍ରକୃତିର କାର୍ଯ୍ୟ ଏବଂ ବିଷୟ ବି ସେହି ଗୁଣ ଗୁଡ଼ିକର କାର୍ଯ୍ୟ ହୋଇଥିବାରୁ ଗୁଣ ଗୁଣରେ ତିଷ୍ଠି ରହିଥାଏ । ଆତ୍ମା ଅସଙ୍ଗ ରହିଥାଏ । ସେଥିପାଇଁ ସେହି ଦେହ ସଂଘାତ ଉପାଧି ରୂପରେ ଗୁଣ ଗୁଡ଼ିକର କାର୍ଯ୍ୟ ରୂପକ ବିଷୟଗୁଡ଼ିକର ପ୍ରଭାବ ରହୁଥିଲେ ବି ଆତ୍ମା ସେଥିରେ ଲିପ୍ତ ହୁଏ ନାହିଁ, ସର୍ବଦା ଅସଙ୍ଗ ଏବଂ ନିର୍ବିକାର ହୋଇ ରହିଥାଏ ।

ଏଣୁ ଯାହା କିଛି ଜାଣିବାରେ, ଅନୁଭବରେ ବା କରିବା ଭଳି ଆସୁଛି, ସୁଖ-ଦୁଃଖ, ଶାନ୍ତ, କ୍ରୋଧ, ବିକ୍ଷେପ, ଚଞ୍ଚଳତା, ମାନ, ଅପମାନ, କ୍ରୂରତା, ହିଂସା,

ଦୟା, ଲୋଭ, ଲାଭ, ହାନି, ରୋଗ, ଭୋଗ ସେଗୁଡ଼ିକୁ ଉପାଧିର ହିଁ ଧର୍ମ ବୋଲି ଜାଣ । ସେଗୁଡ଼ିକୁ ନିଜର ବୋଲି ସ୍ୱୀକାର କର ନାହିଁ । ଜ୍ଞାନୀ ସେମାନଙ୍କୁ ଅସ୍ତିତ୍ୱ ଦିଅନ୍ତି ନାହିଁ । ସେଥିପାଇଁ ସେହି ଅବସ୍ଥାଗୁଡ଼ିକ ଆସୁଥିଲେ ବି ସେମାନେ ବିଚଳିତ ହୁଅନ୍ତି ନାହିଁ କିମ୍ୱା ସେଗୁଡ଼ିକ ଚାଲିଗଲେ ବି ପ୍ରସନ୍ନତା, ଶ୍ରେଷ୍ଠତା ଅନୁଭବ କରନ୍ତି ନାହିଁ । କାରଣ ସେ ଜାଣିଥାନ୍ତି, ଯେ ଆସିଛି, ସେ ନିଜେ ନିଜେ ଚାଲିଯିବ । ଗୁଣ ଏବଂ ସେମାନଙ୍କର କାର୍ଯ୍ୟ ନିତ୍ୟ ନୁହେଁ, ବରଂ ପରିବର୍ତ୍ତନଶୀଳ । ଅଜ୍ଞାନ ସେଗୁଡ଼ିକୁ ନିଜର ବୋଲି ଜାଣି ଦୁଃଖୀ ହୋଇ ଚାଲିଥାଏ ।

ଏଣୁ ଯେତେବେଳେ ବି ସେହି ଗୁଣ ଗୁଡ଼ିକର ପ୍ରଭାବରେ ଘୃଣା, କାମ, ଚଞ୍ଚଳତା, କ୍ରୋଧ ବା ତ୍ୟାଗ ଭାବ ଆସିବ, ସେତେବେଳେ ବିବ୍ରତ ହୁଅ ନାହିଁ । ଶାନ୍ତିପୂର୍ଣ୍ଣ ଭାବରେ କାମ କର । ସେସବୁ ସ୍ୱତଃ ଚାଲିଯିବ, ରହିପାରିବ ନାହିଁ । କାରଣ ସେହି ତିନିଗୁଣର ପ୍ରଭାବ ହିଁ ସେମିତି କରିଥାଏ, କମିଯାଏ, ବଢି ଚାଲିଥାଏ, ସର୍ବଦା ଗୋଟିଏ ଭାବରେ ରହେ ନାହିଁ ।

ଏଣୁ କାମ, କ୍ରୋଧ ଇତ୍ୟାଦିକୁ ପ୍ରକୃତିର ସ୍ୱଭାବ ଉପରେ ଛାଡ଼ିଦିଅ । ଯେଉଁ ଗୁଣ ଦ୍ୱାରା ଆମର ଅନ୍ତଃକରଣ ତିଆରି ହୋଇଛି, ସେହି ଗୁଣଗୁଡ଼ିକ ସେମାନଙ୍କ ଅନୁସାରେ କାର୍ଯ୍ୟ କରିବେ, ତାହା ସେମାନଙ୍କର ସ୍ୱଭାବ । କ୍ରୋଧ, କାମକୁ ହଟେଇ ଦେବାର ଚେଷ୍ଟା କରିବା ଅର୍ଥ ସେମାନଙ୍କୁ ମହତ୍ତ୍ୱ ଦେବା, ସତ୍ତାହୀନକୁ ସତ୍ତା ଦେବା । ଜ୍ଞାନ ଦୃଷ୍ଟିରେ ଦେଖିଲେ ତ ସେମାନେ ନିତ୍ୟ ଅଭାବ ଭଳି ହଟିଯାଇଛନ୍ତି । ତଥାପି ଯଦି ଏହା ପ୍ରତୀତ ହେଉଛି, ତେବେ ତାହା ପ୍ରକୃତିର । ମୋର ଚେତନ ଆତ୍ମା ଦ୍ୱାରା ସେମାନେ ପ୍ରକାଶିତ ହେଉଛନ୍ତି, ସେଥିପାଇଁ ସେମାନେ ପରପ୍ରକାଶ୍ୟ । କିନ୍ତୁ ଏହା ମୋ ଠାରେ, ପ୍ରକାଶକ ପାଖରେ ନାହିଁ । ଏଣୁ ସେଗୁଡ଼ିକୁ ସେମାନଙ୍କର ସ୍ୱଭାବ ଉପରେ ଛାଡ଼ିଦିଅ । ଏହା ଉପରେ ବିଶେଷ ଧ୍ୟାନ ଦିଅ ନାହିଁ ଯେ, ଏହି କାମ, କ୍ରୋଧ ଇତ୍ୟାଦି ବିକାର ମୋ ପାଖକୁ କାହିଁକି ଆସୁଛି ବା ମନରେ କାହିଁକି ଆସୁଛି ? ଏମିତି ହେବା ଉଚିତ ନୁହେଁ ? ଏହିଭଳି ବିଚାର କରିବା ଅର୍ଥ ସେମାନଙ୍କୁ ସତ୍ତା ଦେଇ ଜୀବିତ ରଖିବାକୁ ଚାହୁଁଛ ।

କ୍ରୋଧ ଏକ ଆବଶ୍ୟକୀୟ ଅସ୍ତ୍ର, ଯେତେବେଳେ ଆବଶ୍ୟକ ପଡ଼ିବ, ସେତେବେଳ ତାହାର ଉପଯୋଗ କରିବା ପାପ ନୁହେଁ କିନ୍ତୁ ଏହା ହେଉଛି ଦୃଶ୍ୟ ଉପାଧିର ଧର୍ମ । ତାହାକୁ ନିଜର ଧର୍ମ ବୋଲି ମାନିନେବା ହିଁ ପାପ । ଜ୍ଞାନୀ କାମ, କ୍ରୋଧ, ଲୋଭ, ମୋହ ଇତ୍ୟାଦି ବୃତ୍ତିକୁ ଅଜ୍ଞାନ ଭଳି ଉପଯୋଗ କରିଥାନ୍ତି କିନ୍ତୁ ସେଗୁଡ଼ିକୁ ନିଜର ବୋଲି ସ୍ୱୀକାର କରନ୍ତି ନାହିଁ ।

ଦୁର୍ବାସା, ବାମନ, ବିଷ୍ଣୁ ଇତ୍ୟାଦିଙ୍କ ଠାରେ କାମ, କ୍ରୋଧ, ଲୋଭ ଥିଲା କିନ୍ତୁ ସେମାନେ ତାକୁ ହଟେଇ ଦେବାର ଚେଷ୍ଟା କରିନଥିଲେ, କାରଣ ସେମାନେ ଜାଣିଥିଲେ ଯେ, ଏସବୁ ମୋ' ଠାରେ ନାହିଁ, ଏହା ତ ଉପାଧିର ଧର୍ମ, ସେମାନେ ଦେହ ଥିବା ପର୍ଯ୍ୟନ୍ତ ରହିବେ, ସେମାନଙ୍କୁ ହଟେଇଦେବା ବା ଶେଷ କରାଯାଇ ପାରିବ ନାହିଁ କିମ୍ବା ତାହାର ଆବଶ୍ୟକତା ବି ନାହିଁ ।

**"ନ କରୋତି ନ ଲିପ୍ୟତେ"**

ହାନି, ଦୁର୍ଘଟଣା, ଜନ୍ମ, ମୃତ୍ୟୁ, ମାନାପମାନ ଇତ୍ୟାଦି ଆସୁଥିବାର ଦେଖି ବି ଜ୍ଞାନୀ ଚଞ୍ଚଳ ହୁଅନ୍ତି ନାହିଁ । ତୁମଠାରେ ସେହି ବିଚାର ସବୁ ଆସିଗଲେ ନା କିଛି ହେବ ନା କିଛି ବିଗିଡ଼ିଯିବ ? ନିଜେ ନିଜକୁ ଏମିତି ବୁଝ ଯେ, ସେଥିରେ ମୋର ବାସ୍ତବରେ କୌଣସି ସମ୍ବନ୍ଧ ନାହିଁ । ବାସ୍ତବରେ ଏହି କଥା ହୃଦୟରେ ଆସିଯାଉଥିଲେ ଉତ୍ତମ, ନଚେତ ଏହା ଚିନ୍ତା କରି ଚାଲୁଥିଲେ ଯେ, ଏହା ନାହିଁ, ଏହା ଠିକ୍, ଏହା ଭୁଲ୍ ତଥାପି ସୁଦ୍ଧା କ୍ରିୟା ହୋଇଯିବ । କୌଣସି ଦୃଶ୍ୟକୁ ମାନ୍ୟତା ଦେବା, ଅସ୍ତିତ୍ୱ ଦେବା ହିଁ ଅଜ୍ଞାନତା । ଜ୍ଞାନୀ ସେ, ଯେ ନିଜକୁ ଅସଙ୍ଗ, କୂଟସ୍ଥ ବୋଲି ଜାଣିଥାନ୍ତି, ଏବଂ ନିଜ ଠାରେ କୌଣସି ବିଷୟକୁ ସ୍ୱୀକାର କରନ୍ତି ନାହିଁ ।

ଜ୍ଞାନୀ କୌଣସି ଅନ୍ଧ, କାଲ, ଘୁଙ୍ଗା, ଲେଙ୍ଗଡ଼ା, ମୂକ, ନପୁଂସକ ନୁହନ୍ତି ଯେ ଧଳା-କଳାର, ଗରମ-ଥଣ୍ଡାର, ଖଟା-ମିଠାର ପ୍ରଭେଦ ଜାଣିନାହାନ୍ତି । ନା ତାଙ୍କର ଆଖି ଫୁଟିଯାଇଛି ନା ବୁଦ୍ଧି ମରିଯାଇଛି, ଯଦ୍ୱାରା ପ୍ରଭେଦ ଜଣାପଡୁନାହିଁ । ଭଗବାନ ତାଙ୍କ ଜୀବନରେ କେଉଁ କେଉଁ ଲୀଳା କରିନାହାନ୍ତି ? କିନ୍ତୁ ସେ ନିଜ ଠାରେ ସେହି ସେହି କ୍ରିୟାଗୁଡ଼ିକୁ ଦେଖି ନଥିଲେ । ଋଷିପୁତ୍ର ପରୀକ୍ଷିତଙ୍କୁ ଶାପ ଦେଲେ, ମାତ୍ର ମୋର ସେହି ପ୍ରକାର କ୍ରିୟାଗୁଡ଼ିକ ସହିତ ସମ୍ବନ୍ଧ ନାହିଁ ଏହିଭଳି ଅସଙ୍ଗତା ସମ୍ବନ୍ଧରେ ଜ୍ଞାନୀ ଜାଣିଥାନ୍ତି ।

ଅର୍ଥାତ୍ ଏଥିରୁ ନିଷ୍କର୍ଷ ବାହାରିଲା ଯେ, ସେହି ସମସ୍ତ ବୃତ୍ତିଗୁଡ଼ିକୁ ଏବଂ କ୍ରିୟାଗୁଡ଼ିକୁ ପ୍ରକୃତିର ବୋଲି ଜାଣି ଆମ ଭିତରେ ନା ତାହାକୁ ଆମେ ସ୍ୱୀକାର କରିବା, ନା ତାକୁ ଶେଷ କରିଦେବା, ହଟାଇଦେବା ଅଥବା ବଦଳେଇଦେବାର ଇଚ୍ଛା କରିବା, ଚେଷ୍ଟା କରିବା । ନଚେତ୍ ଯେତେ ଆମେ ହଟେଇବା ପାଇଁ ଚେଷ୍ଟା କରିବା ସେତେ ଆମେ କର୍ତ୍ତୃତ୍ୱାଭିମାନୀ ହୋଇ ଚାଲିଥିବା, ପ୍ରକୃତିର ଅଧିନରେ ହିଁ ରହିଯିବା ତଥା ସହଜ ନିତ୍ୟସିଦ୍ଧ ବ୍ରହ୍ମଭାବକୁ ଉପଲବ୍ଧି କରିପାରିବା ନାହିଁ । ହଟେଇଦେବାର ଚେଷ୍ଟା ଛାଡିଦେବା ତ ବ୍ରହ୍ମଭାବ । ଚେଷ୍ଟା କରି ଚାଲିଥିବ ତ ସାରା ଜୀବନ ଧରି ଜୀବ ଏବଂ କର୍ତ୍ତା ହୋଇ ରହିଯିବ ଏବଂ ଜନ୍ମ-ମୃତ୍ୟୁ ଭ୍ରମ ତିଷ୍ଠି ରହିଥିବ ।

ବର୍ତ୍ତମାନ ତ ଏହା ଦେଖିବାର ଥିଲା ଯେ, ଏସବୁ ପ୍ରକୃତିର ଧର୍ମ, ମାତ୍ର ମାନିନେଲୁ ନିଜର ବୋଲି । ବାସ୍ ଏହି ଭୁଲ୍ କରିବସିଲ । ଏଣୁ ନିଜ ଉପରୁ ଏ ବୋଝ ଉତାରି ନିଅ ଯେ, ମୋର ଏହା ଧର୍ମ ନୁହେଁ– ଏହାର ନିଶ୍ଚୟରେ ହିଁ କଲ୍ୟାଣ ନିହିତ । ଯାହା କିଛି ହେଉଅଛି ପ୍ରକୃତିରେ ହିଁ ହେଉଅଛି, ପ୍ରକୃତି ହିଁ କରୁଛି । ତୁମେ ହେଉଛି ଅସଙ୍ଗ ଦ୍ରଷ୍ଟା । ତୁମର ସେହି ଜଡ଼ ପ୍ରକୃତିର କ୍ରିୟା ସହିତ କୌଣସି ସମ୍ବନ୍ଧ ନାହିଁ । ସେହି ଜଡ଼ ପ୍ରକୃତିର କାର୍ଯ୍ୟଗୁଡ଼ିକୁ ନିଜର ବୋଲି ମାନିନିଅ ନାହିଁ । ତାକୁ ନିଜର ମାନିନେବା ବା ନିଜ ଠାରେ ମାନିନେବା ହିଁ ବନ୍ଧନ, ଏହା ହିଁ ଦୁଃଖ । ଯେମିତି ସମସ୍ୟା ଆସୁ ତାହାକୁ ଧୈର୍ଯ୍ୟର ସହିତ, ବୀରତ୍ୱ ସହକାରେ ରକ୍ଷା କର । ଜ୍ଞାନୀ ବିକ୍ଷେପଯୁକ୍ତ କର୍ମଗୁଡ଼ିକୁ କରିବା ପାଇଁ ବି ଡରନ୍ତି ନାହିଁ, ଯାହା ଆସିଯାଏ ତାହା ଉପାଧି ଦ୍ୱାରା ହେଉଥିବାର ଦେଖନ୍ତି, ନିଜକୁ କର୍ତ୍ତା ନୁହେଁ ସାକ୍ଷୀ ଭାବରେ ହିଁ ଦେଖିଥାନ୍ତି ।

**ପ୍ରଶ୍ନ ୧୩୮– ପ୍ରକୃତି ଅନିତ୍ୟ ହୋଇ ବି ନିତ୍ୟ କେମିତି ?**

ଉତ୍ତର– ଯେମିତି ୦ (ଶୂନ୍ୟ)ର ନିଜର କୌଣସି ଅସ୍ତିତ୍ୱ ନାହିଁ କିନ୍ତୁ ୧ (ଏକ) ସାଙ୍ଗରେ ମିଶିଗଲେ ତାହାର ମୂଲ୍ୟ ବଢିଯାଏ, ଜୀବନ ମିଳିଯାଏ, ସେହିପରି ପ୍ରକୃତି ଜଡ଼, ଅନିତ୍ୟ, ସତ୍ତାହୀନ ହେଲେ ବି ଚୈତନ୍ୟ ଆତ୍ମା ସହିତ ନାନା ପ୍ରକାରର କାର୍ଯ୍ୟଗୁଡ଼ିକୁ କରୁଥିବାର ଅନୁଭବକୁ ଆସିଥାଏ । ଯାହା ଯାହା ଜାଣିବାରେ, ଅନୁଭବରେ ଆସେ ସେସବୁ ପ୍ରକୃତି ଏବଂ ପ୍ରକୃତି ସେହି ଚେତନ ଠାରୁ ଅଲଗା ହୋଇ ରହିପାରିବ ନାହିଁ । ଚେତନ ବିନା ଏହା ଶୂନ୍ୟ ଭଳି । ସେଥିପାଇଁ ସେହି ପ୍ରକୃତି ଅନିତ୍ୟ ଅର୍ଥାତ୍ ଅଭାବ ସ୍ୱରୂପ ।

ଏଠାରେ ନିତ୍ୟର ଅର୍ଥକୁ ଅନାଦିକାଳର ଭ୍ରାନ୍ତି ବୋଲି ବୁଝ, ସତ୍ତା ରୂପରେ, ଅସ୍ତିତ୍ୱ ରୂପରେ ନୁହେଁ । ଏହାର ନ ହେବା ହିଁ ସତ୍ୟ । ଯାହା ନିତ୍ୟ ଅର୍ଥରେ କୁହାଯାଇଛି ବାସ୍ତବରେ ତାହା ନିତ୍ୟ ନୁହେଁ ।

ଯେତେବେଳେ ଜାଣିବାବାଲା ଆତ୍ମସତ୍ତା ବିନା ପ୍ରକୃତି କିଛି ନୁହେଁ, ସେତେବେଳେ ପ୍ରକୃତି, ଯାହା ଚେତନର ସତ୍ତା ଦ୍ୱାରା ଜଣାଇବ ତାହା କିଛି ହେଲା ନାହିଁ । ଯେଉଁଠି, ଯାହା ଯେଉଁପରି ବି ଅଛି ତାହା ଚେତନ ସତ୍ତା ମାତ୍ର । ତାହାର କାର୍ଯ୍ୟଗୁଡ଼ିକୁ ନିଜର ବୋଲି ମାନନାହିଁ । ସେହି ଉପାଧିର କାର୍ଯ୍ୟ ଗୁଡ଼ିକରେ ମୁଁ ଭାବ କରିବା ଅର୍ଥାତ୍ ନିଜ ଠାରେ ମାନିନେବା ହିଁ ବନ୍ଧନ ଏବଂ ନା ତା'ର କୌଣସି ବନ୍ଧନ ଅଛି ନା କୌଣସି ଦୁଃଖ, ନା ଦୁଃଖର କୌଣସି କାରଣ ହିଁ ରହିଛି ?

ଆମ ବିନା ପ୍ରକୃତି, ମାୟା ବୋଲି କିଛି ହେଲେ ନାହିଁ । ମାତ୍ର ଆମେ ନିଜର ବଳକୁ ଭୁଲି, ଯାହା ନାହିଁ, ତାକୁ ଆଜି ପର୍ଯ୍ୟନ୍ତ ଅସ୍ତିତ୍ୱ ଦେଇଆସିଛୁ । ଯାହା ନାହିଁ, ତାକୁ ଲଂଘନ କରିବା ଆମକୁ କଠିନ ଲାଗୁଛି । ତୁମରି ଶକ୍ତି ଦ୍ୱାରା ହିଁ ସେ କାଠ କଣ୍ଢେଇର ଖେଳ ଭଳି କାମ କରୁଛି । କଠିନ ଏଇଥିପାଇଁ ଯେ, ସେହି ରୂପରେ ନିଜେ ହିଁ ତ ରହିଛ । ସମୁଦ୍ର ପାରିହେବା ସହଜ, ହିମାଳୟ ପର୍ବତ ଲଂଘନ କରିବା ସହଜ, ସ୍ୱର୍ଗ ବୈକୁଣ୍ଠ ସୀମା ପାଇଯିବା ସହଜ, ସମୁଦ୍ରର ଗଭୀରତା ଖୋଜିନେବା ସହଜ କିନ୍ତୁ ନିଜେ ନିଜ ଦ୍ୱାରା ନିଜର ଅନ୍ତ ପାଇବା, ନିଜେ ନିଜକୁ ଲଂଘନ କରିବା ହୋଇପାରିବ ନାହିଁ, କାରଣ ସ୍ୱୟଂ ହିଁ ଅଛ । ନିଜକୁ ନିଜେ ଭୁଲିଯାଇଛ, ସେଥିପାଇଁ ଯାହା ନାହିଁ, ତାକୁ ଲଂଘନ କରିବା କଠିନ ଲାଗୁଛି । ଲୋକେ ବି କହୁଛନ୍ତି ମାୟା ଆମକୁ ବାନ୍ଧି ପକାଇଛି, ସେଥିରୁ ରକ୍ଷା ପାଇବା ବଡ କଷ୍ଟକର ।

ଅନ୍ଧାର ଯୋଗୁ ଦଉଡ଼ିରେ ସର୍ପ ଭୟ ଉତ୍ପନ୍ନ ହେଲା ଭଳି, ବ୍ରହ୍ମଙ୍କ ଠାରେ ଅଜ୍ଞାନତା ଯୋଗୁ ମାୟା, ପ୍ରକୃତିର କଳ୍ପନା ହେଉଅଛି । ଆଉ କିଛି ନାହିଁ । ଲଂଘନ କଲାବାଲା ହିଁ ତୁମେ ଏବଂ ଯାହାକୁ ଲଂଘନ କରିବାକୁ ଅଛି ତାହା ବି ତୁମେ । ପୁଣି କିଏ କାହାକୁ ଲଂଘନ କରିବ ? ବାସ୍, କେବଳ ଭ୍ରାନ୍ତିରୁ ମୁକ୍ତ ହେବାକୁ ହେବ ।

ବିଜ୍ଞାନ ଏହା ଚିନ୍ତା କରେନାହିଁ ଯେ ଏହା ପ୍ରକୃତି, ମାୟା ମୋର ଆଶ୍ରୟରେ ଅଛି ବା ମୋର ଅଧୀନ । ଏହା ହିଁ ନାହିଁ ମୋର ସ୍ୱରୂପରେ କିମ୍ବା କେଉଁଠୁ ଆସି ମିଶି ନାହିଁ । ତାହା ମୋର ଆଶ୍ରିତ ନା ନୁହେଁ ସେହି ଉଭୟ ଅବସ୍ଥାକୁ ମୁଁ ଜାଣିଛି, ତାହା ମୋ' ଠାରେ ହିଁ ନାହିଁ । ମୁଁ ଏମିତି ଚିନ୍ତନ କରୁଅଛି, ନା ଏମିତି ଯେ- ଚିନ୍ତନ କରୁନାହିଁ, ନା ଏମିତି ଯେ ମୋର ଚିନ୍ତନ କରିବା ଉଚିତ- ଏହିଭଳି ଅନାତ୍ମ ଚିନ୍ତନ ବି କରିବା ଉଚିତ ନୁହେଁ । ଅଥବା ଏଇ ଭଲ, ଇଏ ଖରାପ ଇତ୍ୟାଦି କିଛି ନାହିଁ ବୋଲି ଚିନ୍ତା କରିବା ଉଚିତ, କାରଣ ଏହିସବୁ ଉପାଧି, ପ୍ରକୃତିର କାର୍ଯ୍ୟ । ଜ୍ଞାନୀ ଜାଣିଥାନ୍ତି ଏସବୁ ଗୁଣଗୁଡ଼ିକ ଦ୍ୱାରା ହିଁ ହେଉଛି, ମୋ' ଠାରେ ନାହିଁ ।

ସେଥିପାଇଁ ବିଦ୍ୱାନ କିଛି ଭାବନ୍ତି ନାହିଁ ଯେ, ଏହା ହେଉ ବା ଏହା ନ ହେଉ । ଏମିତି ହେବା ଉଚିତ, ଏମିତି ହେବା ଉଚିତ ନୁହେଁ । କାରଣ ଯେଉଁ ଜିନିଷ ହିଁ ନାହିଁ, ତା ସମ୍ବନ୍ଧରେ କ'ଣ ଚିନ୍ତା କରିବ ? କାରଣ ସେ ନିଜେ ନିଜ ଭିତରେ ପୂର୍ଣ୍ଣ, ଅଦ୍ୱିତୀୟ । ଜ୍ଞାନୀଙ୍କର ସେ ସବୁ କଳ୍ପିତ ମିଥ୍ୟା କଥା ସହିତ ସମ୍ବନ୍ଧ କ'ଣ ? ଜ୍ଞାନୀ ଏହା ଜାଣିଥାନ୍ତି ଯେ ମୋ' ଦ୍ୱାରା ପ୍ରକାଶିତ ହେଉଛି, ସେହି ପରିପ୍ରକାଶ୍ୟ

ସହିତ ମୋର ସମ୍ବନ୍ଧ କ'ଣ ? ସିଏ ମୋର କ'ଣ କ୍ଷତି କରିପାରିବ ? କିଛି ନୁହେଁ । ସେଥିପାଇଁ ଜ୍ଞାନୀ ସର୍ବଦା ନିର୍ଭୟ, ନିର୍ଦ୍ୱନ୍ଦ୍ୱ ହୋଇ ରହିଥାନ୍ତି ।

**ପ୍ରଶ୍ନ ୧୩୯– ବ୍ରହ୍ମ ଆମର ସ୍ୱରୂପ– ଏହିଭଳି ମାନୁଥିବା ଜ୍ଞାନୀଙ୍କ ଦ୍ୱାରା କେମିତି କ୍ରିୟା ହୋଇଥାଏ ?**

ଉତ୍ତର – ଜ୍ଞାନୀ ସବୁ କ୍ରିୟାକୁ ପ୍ରକୃତିର ବୋଲି ଜାଣି ଅସଙ୍ଗ ଭାବରେ କେବଳ ଦେଖି ଚାଲିଥାନ୍ତି । ଅଜ୍ଞାନ, ସମସ୍ତ କ୍ରିୟାଗୁଡ଼ିକୁ ନିଜ ଠାରେ ହେଉଛି ବୋଲି ମାନି ନେଇଥାଏ । ଜ୍ଞାନୀ କେବଳ ଦେଖୁଥାନ୍ତି କିନ୍ତୁ ଏହିଭଳି ଚିନ୍ତନ କରନ୍ତି ନାହିଁ ଯେ ''ଏମିତି କାହିଁକି ହେଉଛି, ଏହି ବିଚାର କାହିଁକି ଆସିଗଲା ?''

ଜ୍ଞାନୀ ଜାଣିଥାନ୍ତି ଯେ, ସେସବୁ ଗୁଣଗୁଡ଼ିକର ପ୍ରଭାବରେ ସାତ୍ତ୍ୱିକ, ରାଜସିକ ତଥା ତାମସିକ ଭାବ ଉଦୟ, ଏବେ ଏବେ ଦେଖୁ ଦେଖୁ ଶିଶୁ, କିଶୋର, ଯୁବା, ପ୍ରୌଢ଼, ବୃଦ୍ଧାବସ୍ଥା ଅଥବା ରୋଗ, ପୀଡା ଭଳି ଉଦୟ ହୋଇଛି । ମୁଁ ତ ସେ'ସବୁ ଭାବ, ଅବସ୍ଥା ଏବଂ ବୃତ୍ତିଗୁଡ଼ିକର ପୂର୍ବରୁ ବିଦ୍ୟମାନ ।

ଯାହା ବି ହେଲା, ଯାହା ହେଉଛି, ଭବିଷ୍ୟତରେ ଯାହା ବି କ୍ରିୟା ହେବ ସବୁ ଉପାଧିର ପ୍ରାରବ୍ଧ ଅନୁସାରେ ହେଉଅଛି । ଜ୍ଞାନୀ ସେହି ଦୃଶ୍ୟ, କ୍ରିୟାଗୁଡ଼ିକ ଠାରୁ ନିଜକୁ ଦୂରରୁ ଦେଖିଥାନ୍ତି । ସେ କୌଣସି କ୍ରିୟା ଭିତରେ ନିଜକୁ ପକେଇ ଦିଅନ୍ତି ନାହିଁ ଯେ, 'ମୁଁ ଏମିତି ବା ମୁଁ ସେମିତି ହୋଇଯାଏ ।''

ଏହା କହିବା ବି ଠିକ୍ ନୁହେଁ ଯେ ''ନିଜକୁ ଦେଖ ମୁଁ କିଏ ?'' ନିଜକୁ ବିଚାର କରି ଚାଲ ଯେ, ମୁଁ ଏମିତି, ମୁଁ ସେମିତି–ଏହିଭଳି ବିଚାର କରିବା ଅର୍ଥ ତ' ନିଜକୁ କିଛି ବନାଇବା । ଏବଂ ପ୍ରତ୍ୟେକ ଅପମିଶ୍ରଣ ପ୍ରକୃତି ରାଜ୍ୟରେ ହୁଏ । ଏଣୁ ଏୟା ଦେଖ ଯେ, ଏସବୁ କ୍ରିୟା, ବୃତ୍ତି କ'ଣ, ଆମ ସାଙ୍ଗରେ ଏହାର କ'ଣ ମେଳ ଅଛି, ବା ହୋଇପାରିବ ?

ଯେପର୍ଯ୍ୟନ୍ତ ଉପାଧିର ସମ୍ବନ୍ଧ ରହିଛି ଉପାଧି (ପ୍ରକୃତି, ସ୍ୱଭାବ) ତ ନିଜ କାମ କରିବ, ତୁମେ ତାକୁ ବନ୍ଦ କରିପାରିବ ନାହିଁ । ସେ ସେହିପରି ତିଆରି ହୋଇଛି ଯେମିତି ଅଗ୍ନି ଜଳାଇବାକୁ ଏବଂ ପାଣି ଶୀତଳତା ପ୍ରଦାନ କରିବାକୁ ହୋଇଛି, ନଚେତ୍ କରିବା ତାହାର ପ୍ରକୃତି ବା ସ୍ୱଭାବ ନୁହେଁ । ଏଣୁ ଉପାଧି ଗୁଡ଼ିକରେ ସେମାନଙ୍କର ପ୍ରକୃତି ଅନୁସାରେ ସେମିତି ସେମିତି କ୍ରିୟାଗୁଡ଼ିକ ନିଶ୍ଚୟ ହେବ ।

ସେଥିପାଇଁ ବେଦାନ୍ତ ଜ୍ଞାନ, କର୍ମର ବିରୋଧୀ ନୁହେଁ । ତୁମକୁ କେବଳ ସେଥିରେ ଅହଂକାର କରୁଥିବା ଯୋଗୁ ବାଧା ଦେଉଛି ଯେ, ତୁମେ କାହା ସହିତ ନିଜକୁ ଜଣେ ବୋଲି ଜାଣନାହିଁ । ତୁମ ସାଙ୍ଗରେ କିଛି ମିଶୁନାହିଁ । ତୁମେ ନିର୍ବିକାର,

ଯେମିତି କି ସେମିତି ରହିଛି । ହଁ, ଯଦି ଆମେ ଏହି ଇଚ୍ଛା କରିବାରେ ଲାଗିଯାଉ ଯେ, ଏମିତି ହେଉ, ଏମିତି ନ ହେଉ, ବା ମୁଁ ଏମିତି କରିବି ନାହିଁ– 'ତେବେ ତାହା ହେଉଛି ଅଜ୍ଞାନତା । ଅହଂକାର ହିଁ ରହିଛି ପ୍ରକୃତିର ଧର୍ମଗୁଡ଼ିକରେ । ଏହି କର୍ତ୍ତୃତ୍ୱାଭିମାନ ସ୍ୱରୂପ ଚ୍ୟୁତ କରିପାରେ, ଯୋଗଭ୍ରଷ୍ଟ ବନାଇପାରେ ।

**ପ୍ରଶ୍ନ ୧୪୦– ସ୍ୱକର୍ମ ଦ୍ୱାରା ପରମାତ୍ମାଙ୍କର ପୂଜା କିପରି କରାଯାଏ ?**

**ଉତ୍ତର–** ସ୍ୱକର୍ମର ତାତ୍ପର୍ଯ୍ୟ ହେଉଛି, ନିଜର ବୋଧ ରହୁ ଯେ, ମୁଁ ହେଉଛି କେବଳ 'ଜାଣିବା', ବୋଧ ମାତ୍ର, ଜ୍ଞାନତା ମାତ୍ର, ଜାଣିବା ଦେଖିବା ମୋର ସ୍ୱଭାବ ନୁହେଁ । ସବୁଥିରେ ସବୁକିଛିରେ ମୁଁ ହିଁ ଅଛି, ଯେମିତି ସବୁ କ୍ରିୟାଗୁଡ଼ିକରେ ବିଜୁଳୀ ହିଁ ସବୁକିଛି । ସେହିପରି ଅନୁଭବ ଦ୍ୱାରା କ୍ରିୟାଗୁଡ଼ିକୁ ଦେଖିଚାଲିବା ହିଁ ସ୍ୱକର୍ମରେ ତାହାର ପୂଜା, ଅନ୍ୟ କିଛି କର୍ମ ଦ୍ୱାରା ନୁହେଁ । କାରଣ ଏହା ଦ୍ୱାରା ସର୍ବଦା ତାହାର ସ୍ମରଣ ହୋଇ ଚାଲିଥାଏ, ନଚେତ୍ ନିରନ୍ତର ଭକ୍ତି କେହି କରିପାରନ୍ତି ନାହିଁ ।

ଯେଉଁ ଜ୍ଞାନୀ କୌଣସି ବୃତ୍ତିକୁ ନିଜର ବୋଲି ମାନିଥାନ୍ତି, ସେ କେବେହେଲେ ବିଦେହ ମୁକ୍ତି ଅର୍ଥାତ୍ ଶାନ୍ତି ପାଇପାରିବେ ନାହିଁ । ଜ୍ଞାନୀ ସେ, ଯେ ବୃତ୍ତି ଅବଲମ୍ବନ ରହିତ ହୋଇ ନିଜକୁ ଦେଖନ୍ତି । ସେ' ହିଁ ସ୍ୱରୂପ ଭୂତ ଆନନ୍ଦକୁ ପାଆନ୍ତି, ତାଙ୍କୁ ହିଁ ସମଦୃଷ୍ଟି ପ୍ରାପ୍ତ ହୋଇଥାଏ । ସେ ସର୍ବଦା ଏକରସ, ଅଖଣ୍ଡ ରହିଥାନ୍ତି । ସେ' ହିଁ ପରମଧାମ ବିଦେହମୁକ୍ତିକୁ ପାଇପାରିବେ । ବିଦେହ ମୁକ୍ତିର ଅର୍ଥ ଦେହନାଶ ହେଲାପରେ ନୁହେଁ । ନଚେତ୍ ଦେହ ନଷ୍ଟ ହୋଇଗଲା ପରେ ତ କିଛିହେଲେ ଅନୁଭବ କରିପାରିବ ନାହିଁ । ଜ୍ଞାନୀ ସର୍ବାତ୍ମ ଦୃଷ୍ଟି କରି ରହିଥାନ୍ତି ଅର୍ଥାତ୍ ସର୍ବତ୍ର ନିଜକୁ ହିଁ ଦେଖନ୍ତି ।

**ପ୍ରଶ୍ନ ୧୪୧– ବ୍ରହ୍ମ ନିଷ୍ଠା କାହାକୁ କୁହାଯାଏ ?**

**ଉତ୍ତର –** ଆତ୍ମତତ୍ତ୍ୱକୁ ସଦ୍‌ଗୁରୁଙ୍କ ପାଖରେ ପହଞ୍ଚି ତ ଜାଣିନେଇଛି କିନ୍ତୁ ଦୃଢ ନିଷ୍ଠା, ନିଜର ଅସଙ୍ଗ, ସାକ୍ଷୀ, ନିଷ୍କ୍ରିୟ ଆତ୍ମ ସ୍ୱରୂପରେ ହୋଇନାହିଁ । ବରଂ ଯାହାଙ୍କର ନିଷ୍ଠା ବର୍ତ୍ତମାନ ଦ୍ୱୈତରେ, ଅନାତ୍ମାରେ ହୋଇଯାଇଛି, ତେବେ ତ ତାଙ୍କ ନୌକା ଭଉଁରୀ ଭିତରେ ପଡିଯାଇଛି । ଅର୍ଥାତ୍ ବର୍ତ୍ତମାନ ଶୁଣି ସାରି ମନନ କରି ବୁଦ୍ଧିରେ ଧାରଣ କରିନାହାନ୍ତି । ଶରୀର, ପ୍ରାଣ, ଇନ୍ଦ୍ରିୟ, ମନ, ବୁଦ୍ଧି ସାଙ୍ଗରେ ତାଦାତ୍ମ୍ୟ କରି ମୁଁ ହେଉଛି କର୍ତ୍ତା ଭୋକ୍ତା– ଏହିଭଳି ବିପର୍ଯ୍ୟୟ ବୁଦ୍ଧି ଅଜ୍ଞାନତାର ଲକ୍ଷଣ । ତେଣୁ ଏହିଭଳି ଅନାତ୍ମାରେ ଆତ୍ମଭ୍ରାନ୍ତି, ମୁଁ ପଣିଆ କରିବା ଉଚିତ ନୁହେଁ ।

ଅଭିନିବେଶ ଆତ୍ମାରେ ହେଉ କି ଅନାତ୍ମାରେ ନ ହେଉ, ନା କେତେବେଳେ ଇଷ୍ଟଙ୍କଠାରେ ପ୍ରସନ୍ନ ହୁଅ ନା ବିପତ୍ତି ପଡ଼ିଲେ ଶୋକ ପାଳନ କର ଯେ– ହାୟ ମୁଁ ଦୁଃଖୀ, ମୁଁ କାମୀ, ମୁଁ କ୍ରୋଧୀ । ଏହିଭଳି ପଶ୍ଚାତ୍ତାପ ବି କର ନାହିଁ ଯେ, ଏମିତି ଠିକ୍ ନୁହେଁ, ଏମିତି କରିବା ଉଚିତ୍ ଥିଲା, ନା ସଂସାର ଛାଡ଼ିଦେଇ ପଳାଇଯିବା ।

ପ୍ରକୃତିକୁ ତାହାର କାର୍ଯ୍ୟ କରିବାକୁ ଦିଅ । ଯାହା ଜୀବ ପାଇଁ ନିଶ୍ଚିତ ହୋଇଛି ସେହିପରି କ୍ରିୟା ତ ହେବାକୁ ପଡ଼ିବ । ଯେଉଁ ପ୍ରାରବ୍ଧ, ସେହିପରି ପ୍ରକୃତି ତିଆରି ମନ, ବୁଦ୍ଧି, ଶରୀର ଆଦିର ଯେଉଁ ଯେଉଁ କାମ ରହିଛି, ସେମାନେ ସେମିତି କରିବେ, ହୁଏତ ଉପାଧି ଏବଂ ସେମାନଙ୍କର କାର୍ଯ୍ୟ କଳ୍ପିତ ହୋଇଥାଉ । ପ୍ରକୃତି ତାହାର କାମ ନିଜେ ସମ୍ଭାଳୁଛି । ମାତ୍ର ଆମର ତାହା ସହିତ ସମ୍ବନ୍ଧ ନାହିଁ । ତା'ଠାରୁ ତାଦାତ୍ମ୍ୟ ହଟାଇ ନେଲେ ହିଁ କଲ୍ୟାଣ ।

ନିଜେ ନିଜକୁ ବ୍ରହ୍ମ ବୋଲି ଜାଣିବା ହେଉଛି ବ୍ରହ୍ମାକାର ବୃତ୍ତି । ସର୍ବତ୍ର ବ୍ରହ୍ମଙ୍କୁ ଦେଖିବା ହେଉଛି ବ୍ରହ୍ମାକାର ଦୃଷ୍ଟି । ନିଜଠାରେ ବ୍ରହ୍ମବୃତ୍ତି ଥାଏ, ସର୍ବତ୍ର ବ୍ରହ୍ମବୃତ୍ତି ନଥାଏ । ସବୁଆଡ଼େ ତ ତୁମେ ହିଁ ବ୍ରହ୍ମଦୃଷ୍ଟି କରୁଛ । ଯାହାର ବୃତ୍ତି ଉଡ଼ିଯାଇଛି, ସେ ସଦାବେଳେ ବ୍ରହ୍ମନାଦରେ ରହିଛି । ଯେ ବୃତ୍ତି ତିଆରି କରିବା, ଭାଙ୍ଗିବାର ଗୋଲକ ଧନ୍ଦାରେ ପଡ଼ିରହିଛି ଯେ–'ଏହା ବି ବ୍ରହ୍ମ, ତାହା ବି ବ୍ରହ୍ମ'–ସେ ସର୍ବଦା ସେହି ବିକ୍ଷେପ ଭିତରେ ହିଁ ବୁଡ଼ି ରହିବ । ତାହା ଅଖଣ୍ଡ ଆନନ୍ଦ ହୋଇପାରିବ ନାହିଁ ।

ଏହି ଚିତ୍ତ ଯେଉଁଠି ବି ଏକାଗ୍ର ହେବ ସେଇଠି ଆନନ୍ଦ ପ୍ରକଟ ହେବ । ସେଇଠି ବିକାର ରହିପାରିବ ନାହିଁ । ଚିତ୍ତ ସମାହିତ ହେବା ଉଚିତ୍, ଯେଉଁଥିରେ ବି ହେଉ । ଯେଉଁଠି ଚିତ୍ତର ପୂର୍ଣ୍ଣ ଏକାଗ୍ରତା ରହୁଛି ସେଇଠି ବ୍ରହ୍ମତା ରହିଛି । ଯେ ସେହି ଚିତ୍ତକୁ ଏବଂ ତାହାର କାର୍ଯ୍ୟକୁ ମାନି ଚାଲିଥାଏ, ତାଙ୍କ ଉପରେ ସେହି ଜଡ଼ ପ୍ରକୃତିର ପରାକ୍ରମ ଚାଲିଥାଏ । ତାକୁ ହିଁ ସେ ବନ୍ଧନରେ ପକେଇ ଥାଏ । ନଚେତ୍ ପ୍ରକୃତି ସ୍ୱୟଂ କୌଣସି ବସ୍ତୁ ନୁହେଁ, ସେ'ତ ଢ଼ୋଲ ଭିତରେ ଥିବା ପୋଲା ଅଂଶ ଭଳି ।

ଆମେ ଯେତେବେଳେ ପ୍ରକୃତିଠାରୁ ତାଦାତ୍ମ୍ୟ ହଟାଇ ନେଉ ସେତେବେଳେ ସେ କିଛି କରିପାରେ ନାହିଁ । ନିଜର କୌଣସି ବଳ ଦେଖାଇପାରେ ନାହିଁ । ବ୍ରହ୍ମଜ୍ଞାନୀଙ୍କ ବିଷୟରେ ସେ ଜାଣିଥାଏ ଯେ, ଏହା ମୋର ଏବଂ ମୋର କାର୍ଯ୍ୟକୁ ତ ମୁଁ କରିବି । ଯଦି ମୋର କ୍ରିୟାକୁ ସେ ସତ୍ୟ ମାନୁଥାନ୍ତି ତେବେ ପୁଣି ମୁଁ ତାକୁ

ବନ୍ଧନରେ ପକାଇ ୮୪ ଲକ୍ଷ ଯୋନି ମାଧ୍ୟମରେ ନଚାଇବ। ଆମେ ଯେତେବେଳେ ପ୍ରକୃତି ସାଙ୍ଗରେ ଏକତା ସ୍ଥାପନା କରିନେଉ ଯେ, ଏସବୁ ଦେହ ସଂଘାତ ହିଁ ମୁଁ, ତାହାର କର୍ମ, ଧର୍ମ, ଅବସ୍ଥା ମୋର, ସେତେବେଳେ ପ୍ରକୃତିକୁ ବଳ ମିଳେ ଏବଂ ସେ ଆମକୁ ଭ୍ରମରେ ପକାଏ ।

ପ୍ରକୃତି କହେ– ଯେ ପର୍ଯ୍ୟନ୍ତ ଅଜ୍ଞାନ ମୋତେ ମାନି ଚାଲିଛି, ସେ ପର୍ଯ୍ୟନ୍ତ ତ ମୁଁ ତାହା ଉପରେ ବସିଛି, ସବାର ହୋଇଛି । ଯେତେବେଳେ ସେ ମାନୁ ନାହିଁ ମୁଁ ଆଉ କାହା ଉପରେ ବସିବି ? ଯେତେବେଳେ ଜ୍ଞାନ ହୋଇଯାଏ ସେତେବେଳେ ଓଲଟା ହୋଇଯାଉଛି । ସେ ମୋ ଉପରେ ସବାର ହୋଇଯାଉଛି, ମୋତେ ନିଜ ଅଧିନରେ କାମ କରାଉଛି ଏବଂ ମୋତେ କୌଣସି ମହତ୍ତ୍ୱ ବା ମୂଲ୍ୟ ଦେଉନାହିଁ । ସେତେବେଳେ ମୁଁ ତାହାର ଗୋଲାମୀ କରୁଛି । ଯେତେବେଳେ ମୋତେ ସେ ବ୍ରହ୍ମ ରୂପରେ ମାନୁଛି, ସେତେବେଳେ ମୁଁ ବି ବ୍ରହ୍ମରୂପ ହୋଇଯାଉଛି । ପୁଣି କିଏ କାହାକୁ ବନ୍ଧନରେ ପକାଇବ ? ସେତେବେଳେ ମୋର ସେହି ବ୍ରହ୍ମଙ୍କ ସହିତ ପ୍ରଭେଦ ରହୁ ନାହିଁ । ଏବଂ ଯେତେବେଳେ ସେ ନିଜ ବ୍ରହ୍ମ ଭାବରେ ସ୍ଥିର ହୋଇଯାଉଛି ସେତେବେଳେ ମୁଁ ତାକୁ କେମିତି ସ୍ପର୍ଶ କରିବି ? ବ୍ରହ୍ମଙ୍କୁ ତ ମୁଁ ଛୁଇଁ ପାରିବି ନାହିଁ । ହଁ, ଯେ ପର୍ଯ୍ୟନ୍ତ ସେ ଜୀବ ଭାବ ରଖିଛି, ସେ ପର୍ଯ୍ୟନ୍ତ ମୁଁ ତା' ଉପରେ ଜୋର ଦେଖାଇ ଚାଲିଛି ।

ଜ୍ଞାନୀ ଚିତ୍ତବୃତ୍ତିକୁ ଅତିକ୍ରମ କରିଥାନ୍ତି । ଅର୍ଥାତ୍ ତାହା ଉପରେ ଧ୍ୟାନ ଦିଅନ୍ତି ନାହିଁ ଯେ, ତାହାର କୌଣସି ସତ୍ତା ଅଛି ବା ସିଏ ମୋର କ୍ଷତି କରିବ ବା ସେ' ନରହିଲେ ମୁଁ ଠିକ୍ ରହିବି । ଏହି କଥା ହିଁ ତାଙ୍କ ବୁଦ୍ଧିରେ ଆସେ ନାହିଁ । ଆମର ଅନାତ୍ମା ସହିତ ତାଦାତ୍ମ୍ୟ ଭାଙ୍ଗିବାର ଅଛି । ବ୍ରହ୍ମଭାବ ବଜାୟ ରଖିବାର ଆବଶ୍ୟକତା ନାହିଁ । ବ୍ରହ୍ମଭାବ ତ ନିତ୍ୟ । ବ୍ରହ୍ମଭାବକୁ ବଜାୟ ରଖିବା ଏବଂ ବିଷୟ ସଂସାର ଦେଖାନଯାଉ ତାହା ପାଇଁ ଚେଷ୍ଟା କରିବା ଅର୍ଥ ତ ଓଲଟି ନିଜର ନିତ୍ୟସିଦ୍ଧ ବ୍ରହ୍ମଭାବରେ ଅବ୍ରହ୍ମତ୍ୱର ଭ୍ରମକୁ ହିଁ ସୃଷ୍ଟି କରାଇ ଚାଲିବା ।

ଏଣୁ ସେହି ଅନ୍ତଃକରଣ ଇତ୍ୟାଦି ଉପାଧି ଗୁଡ଼ିକ ଥିବା ସତ୍ତ୍ୱେ ଜ୍ଞାନର ସାର୍ଥକତା ଥିଲା, ତାହା ତାହାର ଅଭାବ ନିଶ୍ଚୟ କରିବାରେ, ତାକୁ ନଷ୍ଟ କରିବା ପାଇଁ ନୁହେଁ । ବ୍ରହ୍ମବିତ୍ ଜ୍ଞାନୀ ସେଗୁଡ଼ିକୁ କେବଳ ଜାଣିଥାନ୍ତି ଯେ, ସେସବୁ ତିଷ୍ଠି ରହିଛନ୍ତି । ''ମୋଠାରେ ଏହି ତମୋଗୁଣୀ ବିଚାର କାହିଁକି ଆସିଗଲା, ସେମାନେ ମୋତେ ପତିତ ବିକାରୀ କରିଦେଲେ''–ଏହିଭଳି ଭାବରେ ଜ୍ଞାନୀ ନିଜକୁ ମାନି ନଥାନ୍ତି । ଏହି ଶରୀର ଇନ୍ଦ୍ରିୟ, ମନ ଇତ୍ୟାଦି ଗୁଣ ଗୁଡ଼ିକ ଦ୍ୱାରା ନିର୍ମିତ

ହୋଇଥିବାରୁ କମ ବେଶୀ ନିଶ୍ଚୟ ହେବ । ଗୁଣ ଗୁଡ଼ିକର ବଢ଼ିବା କମିବା ଯୋଗୁଁ ସେ ନିଜକୁ ଉଚ୍ଚ ନୀଚ ଭାବରେ ମାନି ନଥାନ୍ତି ।

ଅନ୍ତଃକରଣର ପ୍ରକାଶିତ ହେବା ଏବଂ ଆମର ତାକୁ ନିଜେ ନିଜର ବୋଲି ମାନିନେବା ହେଉଛି ଚିଦାଭାସ ଜୀବର କାମ । ଯେତେବେଳେ କି ଯେଉଁ ଜିନିଷ ପରପ୍ରକାଶ୍ୟ ହୋଇଥାଏ ତାହା ବାସ୍ତବରେ ନଥାଏ । ସେହିଭଳି ମିଥ୍ୟା ଜୀବ ଭାବରେ 'ଅହଂ-ମମ' କରିବା ଅଜ୍ଞାନତା ଯୋଗୁ ହିଁ ହୋଇଥାଏ । ଅନୁକୂଳତା-ପ୍ରତିକୂଳତା ରୂପକ ବିଷୟ ଚିଦାଭାସକୁ ହିଁ ପ୍ରତୀତ ହୁଏ । ମାତ୍ର ମୁଁ ଚିଦାଭାସ ନୁହେଁ, ଯାହା ମୋର ପ୍ରତିଛବି । ସେହିଥିରେ ଜାଣିବାର ଧର୍ମ ପ୍ରକଟ ହେଲା । ନଚେତ୍ ସେ' ହିଁ ନାହିଁ ।

ଏଣୁ ଏହାର ନିଷ୍କର୍ଷ ହେଉଛି ଏୟା ଯେ, ସେହି ଗୁଣ ଗୁଡ଼ିକୁ ଜାଣିବାବାଲା ହେଉଛି ଚିଦାଭାସ, ଯାହା ସେହି ଦୃଶ୍ୟ ଗୁଡ଼ିକର ଅପେକ୍ଷା ରଖି ଉଦୟ ହୋଇଥାଏ । ସେହି ଦୃଶ୍ୟ ପଦାର୍ଥଗୁଡ଼ିକର ଅଭାବରେ ସେ'ବି ଅସ୍ତ ହୋଇଯାଏ । ଆମେ ଅଖଣ୍ଡ ଏକରସ ଆତ୍ମା । ମାତ୍ର ଅଜ୍ଞାନତା ଯୋଗୁ ଆମେ ନିଜର ଅଖଣ୍ଡ ଆତ୍ମାକୁ ଭୁଲିଯାଇ ଅନାତ୍ମା ଚିଦାଭାସକୁ ନିଜର ସ୍ୱରୂପ ଭାବରେ ମାନି ନେଉଛୁ । ଯଦି ନିଜର ଏହି ଅଖଣ୍ଡତା ବୋଧ ହୋଇଯାନ୍ତା ତେବେ କାହାକୁ ହଟାଇଦେବା, ଦୂର କରିଦେବା, ନଷ୍ଟ କରିଦେବାର ଆବଶ୍ୟକତା ପଡ଼ନ୍ତା ନାହିଁ ।

**ପ୍ରଶ୍ନ ୧୪୨ – ଜ୍ଞାନୀଙ୍କ ପାଇଁ ବିକ୍ଷେପ କ'ଣ ?**

**ଉତ୍ତର** – ଯଦି ଜିଜ୍ଞାସୁ ସାଧକର ଧ୍ୟାନ ଦ୍ୱାରା ବା ଏକାଗ୍ରତା ଯୋଗୁ କେତେବେଳେ କିଞ୍ଚିତ ପରିମାଣରେ ସୁଖାଭାସ ହୋଇଗଲା,ଜ୍ୟୋତି, ଆଲୋକ ଦର୍ଶନ ହୋଇଗଲା, ଯଦିବା ହେଉଛି ସେସବୁ ଦୃଶ୍ୟ ବୃତ୍ତି ହେଉଛି ସତ୍ତ୍ୱ ଗୁଣର କାର୍ଯ୍ୟ । ମାତ୍ର ସେହି ବୃତ୍ତିକୁ ବାରମ୍ବାର ବଜାୟ ରଖିବା ପାଇଁ ଯଦି ଚେଷ୍ଟା କରି ଚାଲୁଥାଅ ଯେ, ଏହି ବୃତ୍ତି ସର୍ବଦା ତିଷ୍ଠି ରହୁ, ତେବେ ତାହା ହେଉଛି ବିକ୍ଷେପ । ଯେତେବେଳେ ଅନାତ୍ମ ବିଚାର ଆସୁଛି ସେତେବେଳେ କହିଥାଅ ଯେ, ଏହା ଦ୍ୱାରା ମୋର ସମାଧି ଭାଙ୍ଗିଗଲା, ଏବେ ପୁଣି କେମିତି ପ୍ରାପ୍ତ ହେବ ? ହାୟ, ମୁଁ କ'ଣ କରିବି ? ଏସବୁ ହେଉଛି ଚିଦାଭାସ । ପୁନଶ୍ଚ ଏହାଠାରୁ ନିବୃତ୍ତି ଚାହୁଁଛ ଏବଂ ଦୃଶ୍ୟବର୍ଗର ନିନ୍ଦା କରୁଛ ତ ରହିଗଲ ସେହି କୂଅ ଭିତରେ, ଚିଦାଭାସ ଉପାଧି ଗୁଡ଼ିକର ଘେର ଭିତରେ, ସେଥିରୁ ବାହାରି ପାରିଲ ନାହିଁ । ମାତ୍ର ସେପରି ପଶ୍ଚାତ୍ତାପ କରିବାର ଆବଶ୍ୟକତା ନଥିଲା । ତୁମକୁ ଏହି ବିଚାର ସ୍ପର୍ଶ କରେ ନାହିଁ ଯେ, ତୁମେ ଅଟଳ, କୂଟସ୍ଥ, ଯେମିତି କି ସେମିତି, ସ୍ୱପ୍ରକାଶରେ ନିତ୍ୟ ବିଦ୍ୟମାନ । ଜ୍ଞାନୀ, ତିନିଗୁଣର କାର୍ଯ୍ୟ, ପ୍ରକାଶ, ପ୍ରବୃତ୍ତି ତଥା ମୋହ ଆସୁଥିବାର ଏବଂ

ଯାଉଥିବାର ତ ଦେଖନ୍ତି, କିନ୍ତୁ କାହାର ଉପସ୍ଥିତି ପ୍ରତି ରାଗ-ଦ୍ୱେଷ କରନ୍ତି ନାହିଁ ଯେ-ଏହା ଆସିଲା ଏବଂ ଏହା ଚାଲିଯିବ, ଏହିଭଳି ଭାବନ୍ତି ନାହିଁ ଯେ, 'ମୁଁ' ଆଜି ଯାହା ମୁଁ, ଏହା ମୁଁ ନୁହେଁ ।

**ପ୍ରଶ୍ନ ୧୪୩ – ଜ୍ଞାନୀଙ୍କ ବ୍ୟବହାରରେ ଦୁଃଖ, କ୍ରୋଧ, ଶୋକ ଇତ୍ୟାଦି କାହିଁକି ପ୍ରକାଶିତ ହୋଇଥାଏ ? ଏବଂ ସ୍ୱରୂପ ବିସ୍ମରଣ ହୋଇଗଲା ପରେ ସେ କ'ଣ କରିବେ ?**

**ଉତ୍ତର** – ବ୍ୟବହାର ସମୟରେ ଯେଉଁ ମନ ଅସ୍ଥିର ହୋଇଯାଉଛି, ସ୍ୱରୂପ ବିସ୍ମୃତ ହୋଇ ଦେହଭାବ ଉଦୟ ହୋଇଗଲେ, କ୍ରୋଧ, ଶୋକ ଏବଂ ଦୁଃଖ ଦ୍ୱନ୍ଦ୍ୱ ହୋଇଗଲେ ବି ସେଥିରେ ଅସଙ୍ଗ ବୋଲି ନିଜକୁ ବୁଝିବା ଉଚିତ୍ । ଯାହା କିଛି ବି ଦେଖିବା, ଜାଣିବା, ଅନୁଭବ କରିବାବାଲା, ତାହା ବୁଦ୍ଧିରେ ପ୍ରତିବିମ୍ବିତ ଚିଦାଭାସ ଏବଂ ସେହି ଚିଦାଭାସ ହିଁ ଇନ୍ଦ୍ରିୟମାନଙ୍କର ଧର୍ମ ଗୁଡ଼ିକରେ ଅହଂକାର କରି, ମୁଁ ଭାବ କରି, ଦୁଃଖୀ ସୁଖୀ ହୋଇ କାନ୍ଦିଥାଏ, ଚିତ୍କାର କରିଥାଏ । ଏହି ଆରୋପିତ ଚିଦାଭାସ, ମିଥ୍ୟା ଆତ୍ମା, ମିଥ୍ୟା 'ମୁଁ' ର ଧର୍ମକୁ, ସତ୍ୟାତ୍ମା ସତ୍ୟ ମୁଁ, ଉପରେ ଆରୋପିତ କରି ଦିଆଯାଏ ।

ଯେ ପର୍ଯ୍ୟନ୍ତ ଦେହ ରହିଛି ବ୍ୟବହାର ସମୟରେ ସେହିଭଳି ହୋଇଚାଲିବ । ଯେତେବେଳେ ଯାଏ ଜାଗ୍ରତ ଅବସ୍ଥା ରହିଛି, ଇନ୍ଦ୍ରିୟମାନେ ସୁସ୍ଥ ଅଛନ୍ତି, ଅନ୍ତଃକରଣ ଅଛି, ସେତେବେଳେ କିଛି ନା କିଛି ଜାଣିବା, ଦେଖିବା, ଶୁଣିବା, କହିବା, ଗ୍ରହଣ-ତ୍ୟାଗ କରିବା ରହିଥିବ, ଏହା ଦେହ ଥିବା ପର୍ଯ୍ୟନ୍ତ ଯିବ ନାହିଁ । କାହାର ବି ଯାଇନାହିଁ । ସେହିଭଳି କୌଣସି ଦେହଧାରୀ ଅର୍ଥାତ୍ ମନୁଷ୍ୟ ନାହାଁନ୍ତି, ଯାହାଙ୍କଠାରେ କାମ, କ୍ରୋଧ, ଲୋଭ-ମୋହ ଇତ୍ୟାଦି ବୃତ୍ତି ଗୁଡ଼ିକର ସ୍ଫୁରଣ ହେଉନାହିଁ । ଏହା ତ ସ୍ଫୁରିତ ହେବ । ସବୁ ମହାତ୍ମାଙ୍କଠାରେ ସେହିସବୁ ବୃତ୍ତି ଏବଂ ଭୋଗ ବି ଦେଖାଯାଏ, ଯେପରି ଅଜ୍ଞାନଙ୍କ ଜୀବନରେ ବି ପ୍ରତୀତ ହୋଇଥାଏ । କେବଳ ପାର୍ଥକ୍ୟ ରହିଛି ନିଜଠାରେ, ମାନିବା-ନମାନିବାରେ,ଅଜ୍ଞାନ ପାଖରେ । ଅଜ୍ଞାନ ଚିଦାଭାସ ପ୍ରକୃତିର କାର୍ଯ୍ୟକୁ ନିଜର ବୋଲି ମାନିନେଇ ଦୁଃଖ, ବନ୍ଧନକୁ ପ୍ରାପ୍ତ ହୋଇଥାଏ । ଯେତେବେଳେ କି ଜ୍ଞାନୀ ସେଗୁଡ଼ିକୁ ଚିଦାଭାସ ଭାବରେ ଦେଖିଥାନ୍ତି, ଆତ୍ମା ଭାବରେ ନୁହେଁ । ଏଣୁ ଜ୍ଞାନ ସେହି ଜାଣିବାରେ, ନଷ୍ଟ କରିବାରେ ନଥାଏ ଯେ ଆମକୁ କିଛି ହେଲେ ପ୍ରତୀତ ନହେଉ । ଜ୍ଞାନ ତ ଏୟା ଯେ, ସେଗୁଡ଼ିକୁ ଜାଣିଥିଲେ ବି ସେଥିରେ ସତ୍ୟବୁଦ୍ଧି ନହେଉ ଏବଂ ନିଜକୁ ଅସଙ୍ଗ ବୋଲି ଜାଣ । ଯଦିଓ ଏହା ଜାଣିବା, ଭାବିବା ବି ମିଥ୍ୟା ଜୀବର କାର୍ଯ୍ୟ-ଚିଦାଭାସ ହିଁ କରୁଛି । ତେଣୁ ଚିଦାଭାସ ଜ୍ଞାତାର ଉଦୟ ହୋଇଯିବ କୌଣସି

ଆପତ୍ତିଜନକ କଥା ନୁହେଁ । ଆପତ୍ତିଜନକ ହେଉଛି ଏୟା ଯେ ଚିଦାଭାସର ଧର୍ମଗୁଡ଼ିକୁ ଆମେ ଆପଣାର ବୋଲି ମାନି ବସିଥାଉ, ତାହାର ଧର୍ମଗୁଡ଼ିକ ସାଙ୍ଗରେ ମିଶିଯାଉ ।

ଆତ୍ମା ଏବଂ ଚିଦାଭାସ ଭିତରେ ପାର୍ଥକ୍ୟ ରହିଛି । ଆତ୍ମା ହେଉଛି ଅଖଣ୍ଡ । ଚିଦାଭାସ ହେଉଛି ପରିଚ୍ଛନ୍ନ । ବିଷୟ ଗୁଡ଼ିକ, ଦୃଶ୍ୟ ଗୁଡ଼ିକ ସେହି ଜାଣିବା ପରିସର ଭିତରେ ହୋଇଥିବାରୁ ହିଁ ସେ ଅଛି ନହେଲେ ସେ' ତାହାର ଅଭାବରେ ରହନ୍ତା ନାହିଁ ।

ଯେତେବେଳେ ଅନ୍ତଃକରଣରେ ଚେତନ ଆତ୍ମାର ଆଭାସ ପଡ଼େ, ସେତେବେଳେ ସେଠାରେ ଗୋଟିଏ ମୁଁ (ଅହଂ) ଉଦୟ ହୋଇଯାଏ । ଏହି ଅହଂ (ମିଥ୍ୟାରେ) ହିଁ ବିଷୟ ବାସନାକୁ ଦେଖିଥାଏ, ଚାହିଁଥାଏ, ଭୋଗୀଥାଏ, ଶୁଦ୍ଧ ସତ୍ୟ ଆତ୍ମା ନୁହେଁ । କାରଣ ଯେଉଁଠି ଦ୍ୱୈତ ନାହିଁ ସେଠାରେ କିଏ କାହାକୁ ଦେଖିବ, ଶୁଂଘିବ, ଜାଣିବ ? ବିଷୟ ଗ୍ରହଣ ପାଇଁ ଜଣେ ଦ୍ରଷ୍ଟା, ଜ୍ଞାତା, ଭୋକ୍ତା ଆବଶ୍ୟକ । ଯେଉଁଠି ବିଷୟ ଗ୍ରହଣ ହୁଏ, ସେଠାରେ ସେହି ମିଥ୍ୟା ମୁଁ (ଅହଂ) ହିଁ ଦ୍ରଷ୍ଟା ହୋଇ ଛିଡ଼ା ହୋଇଯାଏ ଏବଂ ଭୋକ୍ତା ହୋଇଯାଏ । ସେ' ତାହା ବିନା ନଥାଏ ଯେମିତି ସମାଧି, ସୁଷୁପ୍ତିରେ ହୋଇଥାଏ । ଏଣୁ ଏହି ଜ୍ଞାତ ବା ଚିଦାଭାସ ଆମର ବାସ୍ତବ ଆତ୍ମା ନୁହେଁ । ଏହା ଅନିତ୍ୟ ଏବଂ ସାପେକ୍ଷ ହୋଇଥିବାରୁ ମିଥ୍ୟା । ମାତ୍ର ଅଜ୍ଞାନତା ବଶତଃ ଆମେ ସେହି ମିଥ୍ୟା ଚିଦାଭାସ ଜୀବକୁ ହିଁ ନିଜକୁ ନିଜେ (ଆତ୍ମା) ବୋଲି ମାନିନେଇଥାଉ ଏବଂ ତା' ଦ୍ୱାରା ହେଉଥିବା ସୁଖ-ଦୁଃଖଗୁଡ଼ିକୁ ନିଜର ବୋଲି ମାନିନେଉ । ସେଥିପାଇଁ ତାକୁ ନଷ୍ଟ କରିବାକୁ ଚାହୁଁ ନାହିଁ ।

ଆତ୍ମାଠାରୁ ଏହି ଅନ୍ତଃକରଣକୁ ଦ୍ୱୈତ ଭାବରେ ବୁଝିନେବା ଉଚିତ୍ ନୁହେଁ, ଯେମିତି ଦୀପ ଏବଂ ସୂର୍ଯ୍ୟ ଦ୍ୱାରା ପଦାର୍ଥ ପ୍ରକାଶିତ ହୋଇଥାଏ । ଏଠାରେ ସେହି ଅନ୍ତଃକରଣର ଆତ୍ମା ଦ୍ୱାରା ପ୍ରକାଶିତ ହେବା ସେହିପରି, ଯେମିତି ସ୍ଫଟିକମଣି ନିର୍ମଳ ସ୍ୱଚ୍ଛ ହୋଇଥିଲେ ବି ତାହା ତଳେ ରଖି ଥିବା ଲାଲପୁଷ୍ପ ଦ୍ୱାରା ମଣିଟି ଲାଲରଙ୍ଗ ଭଳି ମନେ ହୋଇଥାଏ । ସେହିପରି ଅନ୍ତଃକରଣରେ ଏହି ଅତି ସ୍ୱଚ୍ଛ ଆତ୍ମା ବି ଅନ୍ତଃକରଣ ରୂପରେ ହିଁ ପ୍ରତୀତ ହୋଇଥାଏ । ଅଥବା ଦଉଡ଼ି ହିଁ ସର୍ପ ରୂପରେ ଭାସିତ ହୋଇଥାଏ । ଜ୍ଞାନୀ ଏହାକୁ ମିଥ୍ୟା ବୋଲି ଜାଣି ନିଜକୁ ପ୍ରକାଶକ ଏବଂ ଅସଙ୍ଗ ଭାବରେ ଜାଣିଥାନ୍ତି । ଏଣୁ ନାଁ ତ ଭାସୁଥିବା ଅଧ୍ୟସ୍ତ ସତ୍ୟ ହୋଇଥାଏ, ନା ସେହି ପ୍ରତୀତିର ଆଧାର ବିକାରୀ ହୋଇଥାଏ । ଆତ୍ମା ଯେମିତି କି ସେମିତି ନିର୍ବିକାର ରହିଥାଏ । ଜ୍ଞାନୀ ଏହି ବିବେକ ବୁଦ୍ଧି ଦ୍ୱାରା ସାଧାରଣ ବ୍ୟବହାର କରିଥାନ୍ତି ।

**ପ୍ରଶ୍ନ ୧୪୪– ବ୍ୟବହାର ସମୟରେ ଅନୁକୂଳ–ପ୍ରତିକୂଳତା ଭିତରେ ଏହି ବେଦାନ୍ତ ଜ୍ଞାନକୁ କିପରି ଉପଯୋଗୀ ଭାବରେ ମାନି ନିଆଯିବ ?**

**ଉତ୍ତର –** ବ୍ୟବହାରରେ ହିଁ ତ ବେଦାନ୍ତ ବ୍ୟକ୍ତ ହେଉଅଛି । ବ୍ୟବହାର ପାଇଁ ହିଁ ବେଦାନ୍ତ ଜ୍ଞାନ ଉପଯୋଗୀ । ଆତ୍ମଜ୍ଞାନ, ସୁଷୁପ୍ତି ଏବଂ ସମାଧି ପାଇଁ ହୋଇନାହିଁ । ବ୍ୟବହାର ସମୟ ଜାଗ୍ରତରେ ହିଁ ଏହାର ଉପଯୋଗିତା ଥାଏ ଏବଂ ବିନା ବ୍ୟକ୍ତତାରେ ତୁମେ ଅବ୍ୟକ୍ତକୁ ଜାଣି ବି ପାରିବ ନାହିଁ । ସେଥିପାଇଁ ଏହି ଜାଗତିକ ବ୍ୟବହାର ବି ଆବଶ୍ୟକ । ସତ୍ୟ କହିବାକୁ ଗଲେ, ଏହି ଜାଗତିକ ବ୍ୟବହାର ବେଦାନ୍ତର ହିଁ ସ୍ପଷ୍ଟୀକରଣ, ପ୍ରତ୍ୟକ୍ଷ ପ୍ରୟୋଗଶାଳା ।

ତତ୍ତ୍ୱବେତ୍ତାଙ୍କ ଉପରେ କୌଣସି ବିଧି ବା ନିଷେଧ ବି ଲାଗୁ ହୁଏ ନାହିଁ ଯେ – ଏଇ ଆଡ଼କୁ ରହିବ, ସେହି ଆଡ଼କୁ ରହିବ ନାହିଁ, ଏହିପରି କର, ସେମିତି କରନା । ସେ ପ୍ରାରବ୍ଧ ଅନୁସାରେ ଯେଉଁ ଆଡ଼େ ବିଚରଣ କରୁଛନ୍ତି କରନ୍ତୁ କୌଣସି ଆପତ୍ତି ନାହିଁ । ଅନ୍ୟ ମହାତ୍ମାମାନେ ତ ଅନେକ ପ୍ରକାରର ମର୍ଯ୍ୟାଦାଗୁଡ଼ିକୁ ବି ପାଳନ କରୁଛନ୍ତି । ମାତ୍ର ତତ୍ତ୍ୱବେତ୍ତା ବିଭୋର, ମତ୍ତ, ପାଗଳାଙ୍କ କଥା କିଛି ନିଆରା, ଯେ କୋଟିଏ ଭିତରୁ ଘୁଞ୍ଚିଯାଇ ଏକଲା ଚାଲିଥାନ୍ତି । ସେ ହୁଏତ ଯେମିତି ବିଚରଣ କରନ୍ତୁ ବେଦ ଶାସ୍ତ୍ର ସେଥିପାଇଁ କୌଣସି ଆପତ୍ତି ଉଠାଇ ନାହିଁ । ସେ ଶାସ୍ତ୍ରର ମର୍ଯ୍ୟାଦାକୁ ପାର ହୋଇଯାଇଛନ୍ତି ।

ତତ୍ତ୍ୱବେତ୍ତା ରାଜା ଜନକ, ଶ୍ରୀକୃଷ୍ଣ, ଅର୍ଜୁନ, ଦୟାନନ୍ଦ, ଗୋପାଙ୍ଗନାମାନେ, ସଦନ, ଜଡ଼ ଭରତ, ମୀରା, ମନସୁର, ସକ୍ରେଟିଶ୍ ଇତ୍ୟାଦିଙ୍କ ନାମ ଇତିହାସରେ ପ୍ରସିଦ୍ଧ । ସେମାନେ ପ୍ରତ୍ୟେକ ପରିସ୍ଥିତିରେ ସମଭାବରେ ରହୁଥିଲେ ।

ଦତ୍ତାତ୍ରେୟ ଯେତେବେଳେ ଦେଖିଲେ ଯେ, ଆସୁଥିବା ଲୋକମାନଙ୍କର ଭିଡ ବହୁତ ବଢ଼ିଯାଉଛି, ସେତେବେଳେ ଅସଲି ଜିଜ୍ଞାସୁ ରହିଯାନ୍ତୁ ଏବଂ ଠକ ଶିଷ୍ୟ ପଳେଇଯାନ୍ତୁ ସେଥିପାଇଁ ଶିଷ୍ୟମାନଙ୍କୁ ପରୀକ୍ଷା କରିବା ପାଇଁ ସେ ମଦ ବୋତଲ ହାତରେ ଧରି ବେଶ୍ୟା କାନ୍ଧରେ ହାତ ପକାଇନଗରକୁ ବାହାରି ପଡିଲେ ଯଦ୍ୱାରା କିଏ ତତ୍ତ୍ୱବେତ୍ତା ଅଛି ଏବଂ କିଏ ତତ୍ତ୍ୱବେତ୍ତା ନୁହେଁ ଜାଣିପାରିବେ । କାରଣ ଯେ ପ୍ରକୃତରେ ଗୁରୁଭକ୍ତ, ତତ୍ତ୍ୱଜିଜ୍ଞାସୁ ହେବେ, ସେ ଗୁରୁଙ୍କର କୌଣସି କ୍ରିୟା ଦେଖି ଆପତ୍ତି କରିବେ ନାହିଁ । କିନ୍ତୁ ଯାହାଙ୍କର ବ୍ରହ୍ମଙ୍କ ବୋଧ ନାହିଁ, ଗୁରୁ ଉପରେ ପୂର୍ଣ୍ଣ ଶ୍ରଦ୍ଧା ନାହିଁ, ସେ ଆପତ୍ତି ଉଠାଇବେ ଏବଂ ପଳେଇଯିବେ ।

ଶିଖରଧ୍ୱଜ ରାଜାଙ୍କ ପତ୍ନୀ ବି ସଂକଳ୍ପ ପୁରୁଷକୁ ପ୍ରକଟ କରାଇ, ତାଙ୍କ ସହିତ ରମଣ କରି, ନିଜର ପତିଙ୍କ ଆଗରେ ଲୀଳା କରି ଦେଖାଇଲେ, ଯଦ୍ୱାରା ଏହା

ଜଣାପଡ଼ିବ ଯେ, ରାଜା ପୂର୍ଣ୍ଣ ବ୍ରହ୍ମଭାବରେ ଅଛନ୍ତି ନା ନାହାନ୍ତି । ମାତ୍ର ରାଜାଙ୍କର ନିଜ ପତ୍ନୀ ଚୁଡାଲାଙ୍କ ପ୍ରତି କ୍ରୋଧ ଆସିଲା ନାହିଁ ଯେ, ମୋର ରାଣୀ ଜଣେ ଅନ୍ୟ ପୁରୁଷ ସାଙ୍ଗରେ କାହିଁକି ରମଣ କରୁଛନ୍ତି, ମୁଁ ବର୍ତ୍ତମାନ ତାଙ୍କୁ ତ୍ୟାଗ କରିଦେବି, ମାରିଦେବି ।

ଆମେ ନିଜ ଦେହ ସଂଘାତର କ୍ରିୟାଗୁଡ଼ିକୁ ଦେଖି କିଛି ନା କିଛି ମାନିନେବାରେ ଲାଗିଯାଉ ଯେ – ମୁଁ ପାପୀ, ମୂର୍ଖ, ବୁଦ୍ଧିମାନ, କାମୁକ, କ୍ରୋଧୀ ଇତ୍ୟାଦି ଇତ୍ୟାଦି । ବ୍ୟବହାରିକ ଦୃଷ୍ଟିରୁ ହୁଏତ ଏହାକୁ କିଛି ହାନୀ ବୋଲି କହିପାର । ମାତ୍ର ଏସବୁ କିଛି ଉପାଧି, ଗୁଣ ଗୁଡିକରେ ମାୟା ଯୋଗୁ ହେଲା । ତୁମ ଦ୍ରଷ୍ଟା, ସାକ୍ଷୀ, ଅସଙ୍ଗ, ନିର୍ବିକାର, କୂଟସ୍ଥ, ନିରାକାର, ନିରବୟବ, ନିଷ୍କ୍ରିୟ ଆତ୍ମାରେ କିଛି ନାହିଁ । ପବନରେ ଖଣ୍ଡା ବୁଲାଇଲା ଭଳି ଜ୍ଞାନୀଙ୍କ ବ୍ୟବହାର ପ୍ରତି ଧାରଣା ରହିଥାଏ । ଦର୍ପଣରେ ରାସ୍ତାରେ ଯାତାୟତ କରୁଥିବା ଲୋକର ପ୍ରତିବିମ୍ବ ପଡୁଛି ତ ଦର୍ପଣର ସେଥିରେ କ'ଣ ହେଉଛି ନା କ'ଣ କ୍ଷତି ହେଉଛି ? ସେହିପରି ଏହି ମନ, ବୁଦ୍ଧି, ଇନ୍ଦ୍ରିୟ ଇତ୍ୟାଦିର କ୍ରିୟାଗୁଡ଼ିକ, ଅବସ୍ଥାଗୁଡ଼ିକ ବା ଶରୀର ଭାବରେ ବି ସେହି ଚୈତନ୍ୟ ସ୍ଫଟିକମଣି ପରି ଆତ୍ମା ଉପରେ ପ୍ରତିବିମ୍ବ ପଡ଼ି ଚାଲିଥିଲେ ବି କୌଣସି କ୍ଷତି ନାହିଁ । ଏହାକୁ ଜାଣିବାବାଲା ସର୍ବଦା ସେହି ସେହି ଜାଣିଥିବା କ୍ରିୟାଗୁଡ଼ିକ, ବୃତ୍ତିଗୁଡ଼ିକ ଠାରୁ ଦୂରରେ ଅସଙ୍ଗ ଏବଂ ନିର୍ବିକାର ରହିଥାଏ । ସେହି ପ୍ରତିବିମ୍ବ ପଡୁଥାଉ, କ୍ରିୟା ହେଉଥାଉ, ବୃତ୍ତି ଉଠୁଥାଉ ଆମର କ'ଣ ଅଛି ? ସେହିପରି ବ୍ୟବହାର, ତତ୍ତ୍ୱବେତ୍ତାଙ୍କର ବ୍ୟବହାର ସମୟରେ ବି ତିଷ୍ଠି ରହିଥାଏ । ସେଥିପାଇଁ ସେ ସବୁ ପରିସ୍ଥିତିରେ ଶାନ୍ତ ରହିଥାନ୍ତି । କୌଣସି ବି ପରିସ୍ଥିତିରେ ସେ ବିକ୍ଷିପ୍ତ ହୁଅନ୍ତି ନାହିଁ କି ଉଦ୍‌ବେଗ ଲାଭ କରିନଥାନ୍ତି । ଅର୍ଥାତ୍ ଚିଦାଭାସକୁ ମୁଁ ମାନନ୍ତି ନାହିଁ, ନିଜ ଠାରେ ଦୁଃଖକୁ ସ୍ୱୀକାର କରନ୍ତି ନାହିଁ ।

ଦୁଃଖକୁ ସହିବା ନ ସହିବା– ମନରେ କାମ, କ୍ରୋଧ ଆସିବା ନ ଆସିବା– ଏହା ଅନ୍ତଃକରଣ ପର୍ଯ୍ୟନ୍ତ ସୀମିତ । ଏଗୁଡ଼ିକର ଜ୍ଞାନ ସହିତ ଜ୍ଞାନୀଙ୍କର କୌଣସି ସମ୍ବନ୍ଧ ନାହିଁ । ଯାହାର ଯେମିତି ମାନସିକ ସ୍ଥିତି ଥାଏ, ସେ' ସେହି ଅନୁସାରେ ଧୈର୍ଯ୍ୟ ରଖିପାରେ । ଜଣେ ମହାତ୍ମା ବେହୋଶ ନ ହୋଇ ଅପରେଶନ କରାଇନେଲେ ତ ଜଣେ ମହାତ୍ମା ସାମାନ୍ୟ ଦାନ୍ତ ବ୍ୟଥା ଯୋଗୁ ରାତିସାରା ଅସ୍ଥିର ରହିଲେ – ଉଭୟ ପୂର୍ଣ୍ଣଜ୍ଞାନୀ ।

ତେଣୁ ଦୁଃଖ ସହିନ ପାରିବା ବା କାହାର ମୃତ୍ୟୁ ହେଲା ପରେ ଲୁହ ବହିପଡିଲା ଏହାର ଅର୍ଥ ନୁହେଁ ଯେ, ଆମେ ଜ୍ଞାନୀ ନୋହୁଁ । ଅଥବା ଆମର ଜ୍ଞାନ କୁଆଡେ ଚାଲିଯାଇଛି ? ସେମିତି କଥା ନୁହେଁ । ଏସବୁ ଉପାଧିଗୁଡ଼ିକର କାମ । ଆମର

ଏସବୁ ହେବା ନ ହେବାରେ, ସହିବା ନ ସହିବାରେ କ'ଣ ଅଛି ? ଏଣୁ ଅଭିଯୋଗ କରନାହିଁ ଯେ ଏସବୁ କାହିଁକି ହେଉଛି ବା ଜୀବଭାବ କାହିଁକି ଆସିଯାଉଛି ? ଆସୁଥାଉ ସେଥିରେ ଆମର କ'ଣ ଅଛି ? ପ୍ରତୀତି ହେଉଛି ଚିଦାଭାସକୁ । ନାଟକରେ ଅଭିନୟ କରିବାବାଲା ସେୟା ହୋଇ ଯାଉନାହିଁ । ତୁମେ ବି ନାଟକ କର ଏବଂ ନିଜକୁ ଅଲଗା ବୋଲି ଜାଣୁଥାଅ । ତେଣୁ ଆମର ସେଥିରେ ଡରିବାର କିଛି ନାହିଁ ।

**ପ୍ରଶ୍ନ ୧୪୫– ମୋର ମନ ବହୁତ ଚଞ୍ଚଳ ରହୁଛି, ତାହାକୁ କିପରି ବଶ କରାଯାଇ ପାରିବ ?**

ଉତ୍ତର – ପ୍ରାୟ ସମସ୍ତେ ମନ ସମ୍ବନ୍ଧରେ ଅଭିଯୋଗ ଆଣି ପ୍ରଶ୍ନ କରିଥାନ୍ତି । ଜଣାପଡୁନି ସମସ୍ତେ କ'ଣ ହେବାକୁ ଚାହୁଁଛନ୍ତି ? ଦ୍ରଷ୍ଟା ତ କେବେହେଲେ ଦୃଶ୍ୟ ହୋଇପାରିବ ନାହିଁ । ଜ୍ଞାତା ତ କେବେ ହେଲେ ଜ୍ଞେୟ ହୋଇପାରିବ ନାହିଁ । ବଡ଼ ଆଶ୍ଚର୍ଯ୍ୟର କଥା ତୁମେ ଚଞ୍ଚଳ, ନା ଚଞ୍ଚଳ ମନର ସାକ୍ଷୀ ଅଚଳାତ୍ମା ? ଯଦି ମୂର୍ଖ ମନ ଅନାଦିକାଳରୁ ନିଜର ଚଞ୍ଚଳ ସ୍ୱଭାବକୁ ଭୁଲିପାରୁ ନାହିଁ, ତେବେ ତୁମେ ଏତେ ବଡ ଜ୍ଞାନୀ ଏବଂ ବେଦାନ୍ତୀ ହୋଇ ବି ନିଜର ଅଚଳ ଆତ୍ମ ସ୍ୱଭାବକୁ କାହିଁକି ଭୁଲାଇ ଦେଉଛ ? କ'ଣ ମନ କେତେବେଳେ ଆତ୍ମାର ନିନ୍ଦା ବା ଅଭିଯୋଗ କରୁଥିବାର ଶୁଣିଛ କି ଯେ, ଆତ୍ମା କାହିଁକି ଚଞ୍ଚଳ ହେଉନାହିଁ । ତେବେ ତୁମର ମନ ପ୍ରତି ଅଭିଯୋଗ ଆଣିବା କ'ଣ ଶୋଭାପାଉଛି ?

ମନର ଉପଯୋଗ କରି ଚାଲ ଏବଂ ତାହାର ଅବସ୍ଥାକୁ ନିଜର ବୋଲି ଭାବନାହିଁ । ତେବେ ତୁମକୁ ତାହାର ଧର୍ମ ସୁଖ-ଦୁଃଖ ଲାଗିବ ନାହିଁ । ଏବେ ବି ତ ଲାଗୁନାହିଁ, ସେ' ହିଁ ସବୁ କରୁଛି ଏବଂ ସେ' ହିଁ ସବୁ ସୁଖ-ଦୁଃଖର ଭୋକ୍ତା, କିନ୍ତୁ ତୁମେ ଅଯଥାରେ ମଝିରେ ଚିତ୍କାର କରି ଚାଲିଛ ଯେ – ମରିଗଲି, ରକ୍ଷାକର । ଏହା କି ପ୍ରକାର ପାଗଳାମୀ ? କିଏ ଦବିଯାଉଛି, କିଏ ପେଶି ପକାଉଛି, ତୁମେ ଦେଖିଲାବାଲା ହୋଇ ବି କହି ଚାଲିଛ ଯେ – 'ହାୟ ! ମୁଁ ମରିଗଲି ।' ଖେଳୁଥିବା ପିଲାକୁ ଆଘାତ ଲାଗିଲା ଏବଂ ପିଲାର ରକ୍ତ ବହିବା ଦେଖି ମା ଛାତିକୁ ପିଟି କାନ୍ଦି ଚାଲିଲା । ଚିତ୍କାର କଲା ହାୟ ! ମରିଗଲି । ଏହା ହେଉଛି ଅଜ୍ଞାନତା ।

ଟ୍ରେନ୍, ମୋଟର ଚାଲିଛି, ଡବାରେ କେତେ ଶବ୍ଦ ହେଉଛି, କିନ୍ତୁ ତୁମେ ଶୋଇଛ । ଇଞ୍ଜିନର ଶବ୍ଦ, ରେଳ ଧାରଣା ଉପରେ ଚକ ଘଷି ହେଉଛି, କାହାର ଟ୍ରାଜିଷ୍ଟରର ଶବ୍ଦ, କାହାର କଥାବାର୍ତ୍ତାରେ ଗରମ ଗରମ ଭାଷା, ପଙ୍ଖାର ଶବ୍ଦ ତୁମକୁ ଅସୁବିଧାରେ ପକାଉନାହିଁ, ତୁମେ ଆନନ୍ଦରେ ଶୋଇଛ । ଏହିଭଳି ଯାତ୍ରୀ ନିଜ

ଲକ୍ଷ୍ୟରେ ପହଞ୍ଚି ଯାଉଛି । ସେ ରେଳର ଶବ୍ଦକୁ ବନ୍ଦ କରିବାକୁ ଚାହେଁ ନାହିଁ, ଯେଉଁଥିରେ ସେ ଯାତ୍ରା କରୁଛି, କାରଣ ତାକୁ ବନ୍ଦ କରିଦେବା ପାଇଁ ଅଭିଯୋଗ କଲେ, ତା'ର ଯାତ୍ରା ବି ସଫଳ ହୋଇପାରିବ ନାହିଁ । ସେହିପରି ବାସ୍, ତୁମେ ବି ମନକୁ ଶରୀର ରୂପକ ଗାଡ଼ିର ଇଞ୍ଜିନ ବୋଲି ବୁଝିଯାଅ ଯାହା ଜଗତ ରୂପକ ଧାରଣା ଉପରେ ରଗଡ଼ି ରଗଡ଼ି ଚାଲିଛି । ଗାଡ଼ି ଟାଣିଲେ ତ ଶବ୍ଦ ହେବ ହିଁ ହେବ, ତାହାକୁ କିଏ ବନ୍ଦ କରିପାରିବ ? ତୁମେ ଯିବାକୁ ଚାହୁଁଛ ତ ଶବ୍ଦ ଆଡୁ ବୃତ୍ତିକୁ ହଟେଇନିଅ ଏବଂ କାମ କରିଯାଅ । ଘରେ ରେଡ଼ିଓ, ପଙ୍ଖା ଚାଲିଛି ଏବଂ ଆମେ ପ୍ରତିଦିନ ସୁଖରେ ନିଦ ଭିତରକୁ ଚାଲିଯାଉଛୁ । ସେଗୁଡ଼ିକର ଉପଯୋଗ ବି କରୁଛୁ ଏବଂ ବୃତ୍ତିକୁ ସେଠାରୁ ହଟାଇନେଉଛୁ । ବିଚାର କର ! ସେଗୁଡ଼ିକ କ'ଣ ତୁମ ନିଦରେ ବାଧା ସୃଷ୍ଟି କରୁଛନ୍ତି ନା ନିଦ ଆଣିବା ଦିଗରେ ସହଯୋଗୀ ହେଉଛନ୍ତି ? ସନ୍ଥ କିପରି ସୁନ୍ଦର କଥା କହୁଛନ୍ତି – ଭାଇ ! ମାତା, ନିଜକୁ ବହାର କରି ନେଉଛନ୍ତି, ମୁଣ୍ଡ ହଲାଇ ଦେଖାଇ ଚାଲିଛନ୍ତି ଯେ, ଆମେ ଶୋଇନାହୁଁ ମାତ୍ର ନିଘୋଡ ନିଦ ଆସୁଛି । କେତେ ଜୋରରେ ଢୋଲ, ହାରମୋନିୟମ, ମୃଦଙ୍ଗ, ଝାଞ୍ଜ, ପଖାଉଜ, ଚିମ୍‌ଟା, ହାଣ୍ଡି ବଜାଇ ଗର୍ଜନ କରି ଗାନା, ବାଜଣା ହେଉଥାଉ ନା କାହିଁକି କିନ୍ତୁ ନିଦ ପ୍ରେମୀ ଶୋଇ ଯାଉଛନ୍ତି । ତାହେଲେ କ'ଣ ସେମାନଙ୍କୁ ସେହି ଧ୍ୱନି ସବୁ ପ୍ରତିବନ୍ଧକ ହେଉଛି ନା ସେମାନେ ସେଗୁଡ଼ିକ ସହଯୋଗୀ କରି ନେଉଛନ୍ତି ? କଣ ନିଦ ପ୍ରେମୀ କହୁଛି ଯେ, ପାଟିତୁଣ୍ଡ ବନ୍ଦ କର ନିଦରେ ବାଧା ସୃଷ୍ଟି ହେଉଛି ।

ମନ ଯାହା ବି କରୁ, ସେ ତା'ର ଅଧିଷ୍ଠାନରୁ ତ ଲୁଚି ବାହାରକୁ ଚାଲିଯାଉନାହିଁ । ସର୍ବଦା ସାକ୍ଷୀତ୍ୱରେ ହିଁ ରହୁଛି । ସେ ବାହାରକୁ ଯେଉଁଠିକି ବି ଯାଉ, କିନ୍ତୁ ଡୋର ତ ତୁମର ସାକ୍ଷୀ ହାତରେ ଦେଇଯାଉଛି । ତୁମ ସାକ୍ଷୀ ଠାରୁ ଚୋରି କରି ତ କେବେ ପଳାଉନାହିଁ । ଯେଉଁ ସମୟରେ ଦେଖ ସେ ସବୁବେଳେ ଜି, ହଜୁର କରି ଛିଡା ହୋଇଯାଉଛି । ଯେଉଁ ସମୟରେ ତା' ଠାରୁ ତୁମେ କୌଣସି କାମ ନେବାକୁ ଚାହୁଁଛ ସେ ବ୍ରହ୍ମାଣ୍ଡର କେଉଁ କୋଣରେ ଥାଉ ନା କାହିଁକି ତୁମେ ଯେତେବେଳେ ଡୋରକୁ ଟାଣୁଛ, ସେ ତତ୍‌କ୍ଷଣାତ୍ ଯେଉଠି କି ସେଇଠି କାମ ଛାଡ଼ିଦେଇ ଛିଡ଼ା ହୋଇଯାଉଛି ଏବଂ ତୁମ କହିବା ଅନୁସାରେ ନୂଆ କାମରେ ହଁ, ନାଁ କିଛି ନ କହି ଲାଗିଯାଉଛି, ତେବେ କୁହ ସେ ଚଞ୍ଚଳ କେମିତି ? କହିଲ ଦେଖି, ପିଲାଟି ଘର ଅଗଣାରେ ନ ଖେଳି କେଉଁଠି ଖେଳିବ ? ପିଲାଟି ଯଦି ଘରର କାନ୍ଥ ପଛରେ, ଅନ୍ୟର କୋଠରୀରେ ବା ଘରେ ବା କେଉଁ ଗଳିରେ ତୁମ ଆଖି ଆଢୁଆଳକୁ ପଳେଇଯାଉଛି, ଖେଳିବାରେ ଲାଗୁଛି, ଚୁପ୍ ହୋଇ ଯାଉଛି,

ସେତେବେଳେ ତାକୁ ଗାଁ ସାରା ଖୋଜିବାକୁ ପଡୁଛି, ଥାନାରେ, ପୁଲିସରେ ଡାଏରୀ ଦେବାକୁ ପଡୁଛି । ଯଦି କେହି ବଦମାସ୍ ଚୋରାଇ ନେଇଯାଉଛି, ତେବେ ହୁଏତ ଜୀବନସାରା ତୁମକୁ ସେ ମିଳିନପାରେ । ମାତ୍ର ତୁମକୁ କ'ଣ କେବେ ସେମିତି ତୁମର ମନକୁ ଖୋଜିବା ପାଇଁ ବାହାରକୁ ଯିବାକୁ ପଡିଛି ? ତୁମେ କଣ କେବେ ତାକୁ ଡାକି ଡାକି ଥକିପଡିଛ ? ସେ କ'ଣ କେବେ ଭିଡ଼ ଭିତରେ କେଉଁଠି ହଜିଯାଇଛି ? ତୁମ ସାଙ୍ଗ ଛାଡିଦେଇ କାହା ସାଥୀରେ ପଳାଇଛି ? ଜୀବନରେ କେବେ କଣ ତା' ସହିତ ତୁମର ଗୋଟିଏ ମୁହୂର୍ତ୍ତ ପାଇଁ ବି ବିୟୋଗ ହୋଇଛି ? କ'ଣ ତୁମ ଅଜଣାରେ ସେ କୁଆଡ଼େ ପଳେଇଛି ? କେବେ କ'ଣ ତା'ର ଆସିବାରେ ବିଳମ୍ବ ହୋଇଛି ? ତେବେ ପୁଣି ସେ ପଳଉଛି କୁଆଡ଼େ ଯେ ତୁମେ ଅଭିଯୋଗ କରୁଛ ? ସାକ୍ଷୀ ଆଗରେ କିଣା ଚାକର ଭଳି, ପ୍ରକୃତ ସେବକ ଭଳି ସବୁ ସମୟରେ ତ ହାତଯୋଡି ଆଜ୍ଞା ପାଳନ ପାଇଁ ଆଖି ମେଲାଇ ବିଚରା ସବୁବେଳେ ଦେଖି ଚାଲିଥାଏ ଯେ, ମାଲିକ କେତେବେଳେ ଇଶାରା ଦେବ ଏବଂ ମୁଁ ସେବାରେ ଲାଗିଯିବି । ସମସ୍ତେ ତୁମକୁ ଛାଡ଼ିଦେଇ ପଳେଇଛନ୍ତି କିନ୍ତୁ ସେ' ତ ସଦାବେଳେ ଖୋଜିବା ସମୟରେ ବି ସାଙ୍ଗରେ ରହୁଥିଲା ।

ମନ ଭଳି ସେବକ ମିଳିବା ବଡ କଷ୍ଟକର ତଥାପି ସୁଦ୍ଧା ସର୍ବଦା ଅଯଥାରେ ବଦନାମ ହେଉଛି ଯେ, ମନ ବଡ ଚଞ୍ଚଳ, ମନ ବଡ ବଦମାସ, ମନ ବଡ ପାଜୀ, ମନ ବଡ ସଇତାନ । ସେ ବିଚରା ଚୁପ୍‌ଚାପ ସବୁଆଡୁ ନିନ୍ଦା ସହୁଛି ଏବଂ ମୋ' ପାଖକୁ ଆସି କାନ୍ଦୁଛି ଯେ, ଆପଣଙ୍କର ଭକ୍ତ, ପ୍ରେମିକ, ସାଧକ, ସନ୍ୟାସୀ, ଜିଜ୍ଞାସୁ, ମୁମୁକ୍ଷୁ ସମସ୍ତେ ମିଶି ମୋତେ ମାରିଦେବାକୁ ଚାହୁଁଛନ୍ତି । ମୋର ଉପସ୍ଥିତି ସମସ୍ତଙ୍କୁ ବାଧୁଛି, ଚିନ୍ତିତ କରୁଛି । ସମସ୍ତେ ମୋତେ ଜପ, ମାଳା, ଧ୍ୟାନର ଦଣ୍ଡ ଦେଇ ତ ବ୍ୟସ୍ତ କରୁଛନ୍ତି । ତା' ସାଙ୍ଗରେ ସମସ୍ତଙ୍କ ଆଗରେ ସଭା ମଞ୍ଚରେ ନିଜର ଅନ୍ୟ ବନ୍ଧୁ, ମିତ୍ର, ଆତ୍ମୀୟମାନଙ୍କ ଆଗରେ ବି ମୋର ନିନ୍ଦା କରୁଛନ୍ତି, ମୋ ନାମ ନେଇ ଅପମାନିତ କରି ଦେଉଛନ୍ତି । ତେବେ ଆପଣ କୁହନ୍ତୁ ଗୁରୁଦେବ । ଆତ୍ମଦେବ ! ମୁଁ କୁଆଡ଼େ ଯିବି ? ମୁଁ କେଉଁଠି ଯାଇ ମରିବି ? ମୁଁ କୁଆଡ଼େ ମୁହଁ ଲୁଚାଇ ପଳେଇବି, ଯେଉଁଠି ଆପଣଙ୍କର କ୍ଷେତ୍ର ନଥିବ ? ସବୁଠି ତ ଆପଣଙ୍କ ରାଜ୍ୟ, ପୁଣି ଭଲା ଅଧିଷ୍ଠାନକୁ ଛାଡ଼ି ଅଧ୍ୟସ୍ତ ଯିବ ଯଦି କୁଆଡ଼େ ଯିବ ?

ହେ ଆତ୍ମନ ! ଏଇ ମନ କେଡେ ଭୋଳା, କେଡେ ସହିଷ୍ଣୁ, କିନ୍ତୁ ତୁମେ ତାକୁ ଦେଶରୁ ବାହାର କରିଦେବାକୁ ଚାହୁଁଛ । ସେ ବିଚରା ତୁମର ସବୁ ପ୍ରକାର ବ୍ୟବହାର ସହିଯାଉଛି ଏବଂ ଏଠାକୁ ଆସି ସେ ନିଜର ଦୁଃଖ ହାଲ୍‌କା କରୁଛି । ମୁଁ ତାକୁ

ସାନ୍ତ୍ୱନା ଦେଉଛି ଯେ, ତୁ ସେଇଠି ଥକିଯାଇ, ବିବ୍ରତ ହୋଇ ମୋ ପାଖକୁ ଯା'ଆସ କରୁଥା । ଆଉ କିଛି ଦିନ ସହିଯା । ଯେତେବେଳେ ପୂର୍ଣ୍ଣତାର ବୋଧ ହୋଇଯିବ, ସେତେବେଳେ କେହି ବି ମୁମୁକ୍ଷୁ, ଭକ୍ତ, ଜିଜ୍ଞାସୁ, ସନ୍ୟାସୀ ତୋ' ବିରୁଦ୍ଧରେ ଅଭିଯୋଗ ଆଣିବେ ନାହିଁ ବା ତୋତେ ଅପମାନିତ କରିବେ ନାହିଁ କିମ୍ବା ତୋତେ ପ୍ରାଣାୟାମର କ୍ରୁଶ ଉପରେ ଝୁଲାଇ ଫାଶୀ ଦେବେ ନାହିଁ । ପୁଣି ସେ ବିଚରା ମୋ' କଥା ମାନି ଧୈର୍ଯ୍ୟ ରଖି ପୁଣି ତୁମ ସେବାରେ ଲାଗିଯାଉଛି ଏବଂ ସେତିକି ଶ୍ରଦ୍ଧା ବିଶ୍ୱାସ ନେଇ ସବୁ ଯନ୍ତ୍ରଣା ସହି ବି ସେବା କରିଚାଲିଛି । ସବୁ ନିନ୍ଦା ଅପମାନକୁ ସେ ବିଚରା ଏହିଭଳି ସହିଯାଉଛି । ଯେମିତି ତା' ଆଗରେ ତୁମେ ଅନ୍ୟ କାହାର ନିନ୍ଦା କରୁଛ ଏବଂ ସେ ଚୁପ୍‌ଚାପ୍ ହୋଇ ଶୁଣୁଛି । କେବଳ ତୁମେ ସଦାବେଳେ ତାହା ପିଛାରେ ଲାଗିଛ ଯେ, ଆମର ମନ ଏମିତି କରୁଛି, ଆମ ମନ ସେମିତି କହୁଛି ଇତ୍ୟାଦି ଇତ୍ୟାଦି ।

ହେ ଆତ୍ମନ୍ ! ଏହି ପ୍ରାଣାୟାମ୍, କୁମ୍ଭକ ଇତ୍ୟାଦି ସାଧନା କରି କ'ଣ ତୁମେ ତା'ର ହତ୍ୟା କରିବା ପାଇଁ ଅପେକ୍ଷା କରିଛ ? ତା'ର ଜୀବନ କ'ଣ ତୁମକୁ ଫୋଡ଼ି ପକାଉଛି ? ଆଶ୍ଚର୍ଯ୍ୟ କଥା, ଆଖି ଖୋଲୁଛି, ବନ୍ଦ ହେଉଛି, ନାକ ଶ୍ୱାସ ପ୍ରଶ୍ୱାସ ନେଉଛି, ଛାଡୁଛି, ଅପାନ ବାୟୁ ମଳମୂତ୍ର ତ୍ୟାଗ କରୁଛି, ଶରୀରକୁ ଭୋକଶୋଷ ଲାଗୁଛି, ସର୍ବଦା ରକ୍ତ ସଞ୍ଚାଳନ ହେଉଛି, ପାଚନ କ୍ରିୟା ସବୁବେଳେ ହୋଇଚାଲିଛି । ହାତଗୋଡ ହଲୁଛି, ଉଠୁଛି, ଚାଲୁଛି, ଦୌଡୁଛି । ଚର୍ମ ବି ଅନୁକୂଳ, ପ୍ରତିକୂଳ ଥଣ୍ଡା, ଗରମ, କଡ଼ା, ହୃତ୍‌ପିଣ୍ଡରେ ଅନୁଭବ ରୂପକ କ୍ରିୟା ହୋଇଚାଲିଛି । ସେହିପରି ତୁମ ରାଜ୍ୟରେ ସମସ୍ତଙ୍କର ନିଜ ନିଜ ଧର୍ମରେ ତିଷ୍ଠିବାର ପୂର୍ଣ୍ଣ ସ୍ୱତନ୍ତ୍ରତା ରହିଛି । ଦେଖ, କାନର ବି ଦୁଇଟି ଦୁଆର ଅଛି, ଯଦ୍ୱାରା ସେ ଖୁବ୍ ଭଲ-ମନ୍ଦ ଶୁଣୁଛି କାନ୍ଥରେ କାନ ଲଗାଇ, କିନ୍ତୁ ତୁମେ ତାହାକୁ ବନ୍ଦ କରୁନାହଁ, କାହାର କାର୍ଯ୍ୟ ବନ୍ଦ କରିଦେବାକୁ ଚାହୁଁନାହଁ । ସମସ୍ତଙ୍କୁ ମୁକ୍ତବିହାରୀ କରି ରଖିଛ । ତେବେ ପୁଣି ଗୋଟିଏ ମନକୁ କାହିଁକି ଦେଶ ତ୍ୟାଗ ବା ପ୍ରାଣାୟାମ, ସମାଧି ଇତ୍ୟାଦି ସାଧନଗୁଡ଼ିକ ଦ୍ୱାରା ଫାଶୀର ଦଣ୍ଡଦେଇ ମରାଇବାକୁ ଚାହୁଁଛ ? ତାକୁ କାହିଁକି ଧ୍ୟାନର କାରାଗାରେ ପକାଇବାକୁ ଚାହୁଁଛ ? କ'ଣ ତୁମ ଅଯୋଧ୍ୟା ନଗରୀର ସବୁ ଲୋକ (ଇନ୍ଦ୍ରିୟମାନେ)ମାନଙ୍କର ସ୍ୱାତନ୍ତ୍ର୍ୟ ଦେଖି ସେହି ନଗରୀରେ ଥିବା ମନର ସ୍ୱତନ୍ତ୍ର ହେବାକୁ ଇଚ୍ଛା ହେଉନଥିବ ? ତୁମେ ରାମ ରାଜ୍ୟ ଚାହୁଁଛ ନା ରାବଣ ରାଜ୍ୟ । ରାମରାଜ୍ୟ ତ ଏୟା ଯେ, ସବୁଲୋକ ନିଜ ନିଜର ଧର୍ମ କର୍ମରେ ତିଷ୍ଠି ରହିବେ । କାହା ଜୀବନରେ ବାଧା ପହଞ୍ଚାଅ ନାହିଁ, ଦଖଲ କରନାହିଁ । ରାବଣ ରାଜ୍ୟରେ ହିଁ ସମସ୍ତଙ୍କୁ ଗୋଲାମ କରି ରଖିବାର ପ୍ରଥା ଥିଲା । ଦେବତା

ବି ତାହାର ଦାସତ୍ୱରୁ ମୁକ୍ତ ହେବାକୁ ଚାହୁଁଥିଲେ । ସେଥିପାଇଁ ରାମଙ୍କୁ ରାବଣ ରାଜ୍ୟର ଇତି କରିବାକୁ ପଡ଼ିଥିଲା ।

ହେ ଆତ୍ମନ୍ ! ତୁମ୍ଭମାନଙ୍କୁ ବେଦାନ୍ତର ଏତେଗୁଡିଏ ସତ୍‌ସଙ୍ଗ ମିଳିଲା, ସେଥିରୁ କ'ଣ ଲାଭ ଉଠାଇଲ ? ସନ୍ଥ, ଗୁରୁ, ଶାସ୍ତ୍ରର ବଚନରେ କେଉଁଠି ତୁମର ବିଶ୍ୱାସ ହେଲା ? ତୁମକୁ ତ ସେମାନେ ସଚ୍ଚିଦାନନ୍ଦ ଆତ୍ମା ବ୍ୟାପକ, ଅସଙ୍ଗ, ଦ୍ରଷ୍ଟା, ସାକ୍ଷୀ, କୂଟସ୍ଥ, ଅଭୋକ୍ତା, ନିର୍ବିକାର ଅଖଣ୍ଡ ବୋଲି ବତେଇଛନ୍ତି, ଜଣେଇଛନ୍ତି, ମାତ୍ର ତୁମେ ସେମାନଙ୍କର ବଚନ ପ୍ରତି ଶ୍ରଦ୍ଧା ରଖିଲ ନାହିଁ । ତୁମେ ତ କେବଳ ମନର ପିଛା ଧରିଛ, ଯାହା ତୁମେ ନୁହଁ । ତାହାକୁ ସ୍ମରଣ କରିବାରେ ତୁମର ଆଗ୍ରହ ସେତିକି ରହିଲା ନାହିଁ, ଯାହା ତୁମେ ନିଜେ । କେଡେ ଲଜ୍ଜାର କଥା ଯେ, ନିଜେ ଚକ୍ରବର୍ତ୍ତୀ ରାଜା ହୋଇ ଭିକାରୀ ସାଙ୍ଗରେ ବୈରଭାବ ରଖୁଛ । ସେ ବିଚରା ତୁମ ଠାରୁ ମାଗିନେଇ ଖାଇବାବାଲା, ଜୀବନ ନିର୍ବାହ କଲାବାଲା । ଭଲା ତା ଠାରୁ ତୁମକୁ କେଉଁ ଆକ୍ରମଣର ଭୟ ହୋଇପାରିବ ଯେ, ତାହା ସହିତ ଶତ୍ରୁତା ରଖି ବସିଛ ? ଯେଉଁଠି ଦେଖନା କାହିଁକି, ସେଇଠି ବିଚରା ମନ ସମ୍ବନ୍ଧରେ ଅଭିଯୋଗ ହୋଇଚାଲିଛି ।

ଆଶ୍ଚର୍ଯ୍ୟର କଥା, ଆଖିର ଅଭିଯୋଗ କେହି କରୁନାହାନ୍ତି ଯେ, ଆମର ଆଖି ବହୁତ ଚଞ୍ଚଳ, ବହୁତ ବିକାରୀ, ସବୁ ସୁନ୍ଦର ଉପଯୋଗୀ ଦୃଶ୍ୟଗୁଡ଼ିକୁ ଭିତରକୁ ଠେଲି ନେଇଯାଉଛି, ଯାହା ପାଇଁ ପୁଣି ମନକୁ ଚିନ୍ତା କରିବା ଲାଗି ବାଧ୍ୟବାଧକତାରେ ବିକାରୀ ହେବାକୁ ପଡୁଛି । ଏଣୁ ଆମେ ଆଖିରେ କିଛି ନଦେଖୁ ବା ଆଖି ବନ୍ଦ ହୋଇଯାଉ, ଏହିଭଳି କେହି ଚାହୁଁନାହାନ୍ତି । ପ୍ରାଣ ସମ୍ବନ୍ଧରେ ବି କେହି ଅଭିଯୋଗ କରୁନାହାନ୍ତି ଯେ, ସେ ଦିନସାରା ଯା'ଆସ କରୁଛି । ବଡ ଗୋଳମାଳ କଥା ୨୧,୬୦୦ ଥର ବି କିଛି କମ୍ ନୁହେଁ । ଏହାକୁ ବନ୍ଦ କରିଦିଅ ସବୁଦିନ ପାଇଁ । ଏହିଭଳି କେହି ଅଭିଯୋଗ କରୁନାହିଁ ଯେ, ମଳମୂତ୍ର ପ୍ରତିଦିନ କାହିଁକି ହେଉଛି, କାହିଁକି ବନ୍ଦ ହୋଇଯାଉ ନାହିଁ ? ଏବେ କହିଲ ଦେଖି କ'ଣ ତୁମେ ଚାହୁଁଛ ଆଖି ବନ୍ଦ କରିଦେବାକୁ, ପ୍ରାଣ ବନ୍ଦ କରିଦେବାକୁ, ମଳମୂତ୍ର ବନ୍ଦ କରିଦେବାକୁ, ତେବେ ନା କାହିଁକି କରୁଛ ? କାରଣ ଏହା ବିନା ଜୀବନ ହିଁ ରହିବ ନାହିଁ, ଶରୀର ରକ୍ଷା ହେବନାହିଁ । ତେବେ ଯଦି ପ୍ରାଣ ସହିତ ତୁମର ପ୍ରିୟଭାବ ରହିଛି ଯେ, ପ୍ରାଣ ଟିକିଏ ହେଲେ ବି ବନ୍ଦ ନହେଉ, ଚାଲିଥାଉ ତେବେ ମନ ବି ଚାଲିଥିବ । ମନ ସେତେବେଳେ ବନ୍ଦ ହୋଇପାରିବ ଯେତେବେଳେ ପ୍ରାଣ ବନ୍ଦ ହେବ । ଏହି ଦୁହିଁଙ୍କ ଭିତରେ ବଡ଼ ଘନିଷ୍ଠ ସମ୍ବନ୍ଧ ରହିଛି । କେହି ଜଣେ ବି ବନ୍ଦହେଲେ ଅନ୍ୟଟି

ବନ୍ଦେ ବନ୍ଦେ ବନ୍ଦ ହୋଇଯିବ । ଶୀଘ୍ର କୁହ କ'ଣ କହିବାର ଅଛି – ବନ୍ଦ କରିଦେବା ପ୍ରାଣକୁ ବର୍ତ୍ତମାନ, ତେବେ ତ ମନ ଠାରୁ ମୁକ୍ତି ମିଳିଯିବ ?

ଅନାଦି କାଳରୁ ଆଜି ପର୍ଯ୍ୟନ୍ତ ମନକୁ ଜୀବିତ ଅବସ୍ଥାରେ କେହି ବି ବନ୍ଦ କରିପାରିଲେ ନାହିଁ ବା ମୃତ୍ୟୁକୁ ଛାଡି କ'ଣ ଏଭଳି କୌଣସି ଅଲଗା ସାଧନ ଅଛି ଯଦ୍ୱାରା ମନକୁ ପୂର୍ଣ୍ଣ ଭାବରେ ରୋକାଯାଇପାରିବ ? ମନକୁ ଅଟକେଇବାର ସାଧନ ଖୋଜିବା ସେମିତି, ଯେମିତି କୌଣସି ମାଙ୍କଡ଼କୁ ମଦ ପିଆଇ ଚୁପ୍ କରିବା । ଅର୍ଥାତ୍ ପ୍ରଥମତଃ ସେ ସ୍ୱଭାବ ଦୃଷ୍ଟିରୁ ଚଞ୍ଚଳ ପୁଣି ମନ୍ତ୍ର ଜପ, ଧ୍ୟାନ, ସାଧନର ଚିନ୍ତନ ବି ତାକୁ ଆହୁରି ଅଧିକ ହିଁ ଚଞ୍ଚଳ କରିବ, ସ୍ଥିର କରି ପାରିବ ନାହିଁ । ଏଣୁ ଯେ ମନକୁ ଯେତେ ଅଧିକ ଅଟକେଇବାର ଚେଷ୍ଟାରେ ଲାଗିବ, ସେ ଦେଖିବାକୁ ପାଇବ ଯେ, ମନ ତା'ର ପୂର୍ବରୁ ଅଧିକ ଚଞ୍ଚଳ ହୋଇସାରିଛି, କାରଣ ସାଧନର ବୋଝ ତ ସେହି ମନକୁ ହିଁ ଉଠେଇବାକୁ ପଡ଼ିବ ନା ଆଉ କେହି ଅଲଗା ମନ ଦ୍ୱାରା କରାଇବ ? ଇଏ ତ ସେହିଭଳି ହେଲା ଯେ, ପଳାଅ, କିନ୍ତୁ ଚାଲ ନାହିଁ । ଏହିଭଳି କଥା ତ ତୁମେ ମନ ଦ୍ୱାରା କହୁଛ ଯେ, ସାଧନ କର, ଧ୍ୟାନ କର, ଚିନ୍ତନ କର, କିନ୍ତୁ ସ୍ଥିର ରହ । କହିଲ ଦେଖି, ପ୍ରଥମରୁ ତା' ପାଖରେ କଣ କମ୍ ବୋଝ ଥିଲା ? କମ୍ କାମ ଥିଲା ? ବର୍ତ୍ତମାନ ଯେଉଁ ସାଧନର ବୋଝ, ସାଧନର କାମ ତା ଉପରେ ଲଦି ଦିଆଗଲା, ସେଥିରେ ତା'ର ଚଞ୍ଚଳତା, ତା'ର କାର୍ଯ୍ୟ କ୍ଷମତା ବଢିବ ନା କମିବ ? ଆଶ୍ଚର୍ଯ୍ୟ କଥା, ଜଣେ ଦୁଇଜଣ ନୁହଁନ୍ତି ସମସ୍ତେ ଭୁଲରେ ପଡ଼ିଯାଇଛନ୍ତି । ଶାସ୍ତ୍ରଗୁଡ଼ିକରେ ବି ମନକୁ ଅଟକେଇବାର କଥା ଲେଖା ହୋଇଥିବାରୁ ବେଶୀ ଲୋକ ଭ୍ରମରେ ପଡ଼ିଯାଇଛନ୍ତି । ମାତ୍ର ମନକୁ ଅଟକେଇବାର ସାଧନ ବି ତ ମନକୁ ହିଁ କରିବାକୁ ହେବ । ତେବେ କ'ଣ ତା' ପାଇଁ ବଜାରରେ ରେଡିମେଡ୍ ମନ ମିଳୁଛି ? ଯାହାକୁ କିଣିନେଇ ନିଜର ପ୍ରଥମ ମନକୁ ଶାନ୍ତ କରାଯାଇପାରିବ ?

ଧ୍ୟାନଦିଅ । ଏହି ଭୁଲ୍ ବହୁତ ପୁରୁଣା । ଗୁରୁମାନେ ବି ଥରକୁ ଥର ଆସି ମନକୁ ଅଟକେଇବା ପାଇଁ ଉପଦେଶ ଦେଲେ, ମାତ୍ର ଏହି ବିଚାର କଲେ ନାହିଁ ଯେ, ସେମାନଙ୍କର ମନ କ'ଣ ଅଟକି ଯାଇଛି ? କଣ କୃଷ୍ଣଙ୍କ ମନକୁ ବି ଅଟକାଯାଇଛି ? ଯଦି ମନର ସଂକଳ୍ପହୀନ ଅବସ୍ଥାକୁ ବନ୍ଦ କରିବାର କଥା କୁହାଯାଇଥାନ୍ତା, ତେବେ ତୁମର ଗୁରୁଙ୍କ ବାଣୀ କେମିତି ଖୋଲା ହୋଇ ପାରିଥାନ୍ତା ? କୃଷ୍ଣ ଅର୍ଜୁନଙ୍କୁ କାହିଁକି ଏବଂ କେମିତି କହିପାରିଥାନ୍ତେ ? ମାତ୍ର ସମସ୍ତେ କହିଛନ୍ତି ଏବଂ ମନକୁ ବଶ କରିବା ପାଇଁ ବି ବହୁତ କିଛି କହିଛନ୍ତି । ବାଃ, କି କଥା ନ କହିଲେ !! ବ୍ରହ୍ମଚାରୀ ବି ରୁହ ଏବଂ ପିଲା ବି ଜନ୍ମ ହେଉ । କି ପ୍ରକାର ରହସ୍ୟ ଯେ,

ସମସ୍ତେ କହିଯାଉଛନ୍ତି, ଚିତ୍କାର କରି ଚାଲିଛନ୍ତି, ମାଇକରେ ଲାଉଡ ସ୍ପିକରରେ ଉଚ୍ଚ ଆସନରେ ବସି ମଞ୍ଚ ଉପରୁ ଶୁଣାଇ ଚାଲିଛନ୍ତି ଯେ, ମନକୁ ବଶ କର ମାତ୍ର ନିଜେ କହିଚାଲ। ଏଥିରୁ ସିଦ୍ଧ ହେଉଛି ଯେ, ମନକୁ ବଶ କରିବାର ଉଦ୍ଦେଶ୍ୟ ହେଉଛି ସଂକଳ୍ପ ଶୂନ୍ୟ ନ ହେବା, ଜଡ଼ ନ ହେବା, ବରଂ ଦୃଶ୍ୟ ଠାରୁ ଦୃଷ୍ଟି ହଟାଇନେଇ ଦ୍ରଷ୍ଟା ଉପରକୁ ଯିବା, ଦୃଶ୍ୟ ଠାରୁ ସତ୍ୟତ୍ୱ ବୁଦ୍ଧି ହଟାଇ ଦ୍ରଷ୍ଟା ଆତ୍ମା ସହିତ ଯୋଡ଼ି ହୋଇଯିବା, ତେବେ ତାହାକୁ ବାସ୍ତବରେ ଧ୍ୟାନ, ସମାଧି ବା ମନକୁ ସ୍ଥିର କରିବା ବୋଲି କୁହାଯିବ । ତଟସ୍ଥ ହୋଇଯିବାକୁ ହେବ । ମନର ବୃତ୍ତି ଗୁଡ଼ିକର ସାକ୍ଷୀ ହୋଇଯିବାକୁ ହେବ । ନଦୀର ତଟରେ ବସି ନଦୀର ଧାରରେ ବହିଯାଉଥିବା ପଦାର୍ଥଗୁଡ଼ିକୁ ଯେମିତି ଜଣେ ଦେଖିଥାଏ ମାତ୍ର ତା' ପ୍ରତି ଅନୁରାଗ ବା ଦ୍ୱେଷ ରଖେ ନାହିଁ, ବାଛି ବସେ ନାହିଁ, ସେହିପରି ମନର ଦ୍ରଷ୍ଟା ହୋଇ ରହ ।

ବଳଦକୁ ପାଞ୍ଚଣରେ ପିଟିଲେ ବା ଘୋଡାକୁ ଚାବୁକ ଲଗାଇଲେ ସେ କଣ ଶାନ୍ତ ହୋଇଯାଏ ନା ପ୍ରଥମ ଅପେକ୍ଷା ଅଧିକ ବେଗରେ ଦଉଡ଼େ ? ଯଦି ଶାନ୍ତ କରିବାକୁ ଚାହୁଁଛ ତେବେ ତାହାର ଦଉଡି, ତା'ର ଲଗାମକୁ ଢିଲା କରିବାକୁ ହେବ, ପାଞ୍ଚଣ, ଚାବୁକର ପ୍ରୟୋଗ ବନ୍ଦ କରିବାକୁ ହେବ । ଯଦି କରିବ ତେବେ ସେ ଅଧିକ ଚଞ୍ଚଳ ହିଁ ହେବ । ଯଦି କହିବା ଯେ, ଇନ୍ଦ୍ରିୟ ରୂପକ ଘୋଡା କେଉଁଠି ଗାତରେ ନେଇ ପକାଇଦେବେ, ତେବେ ଏହି ଭୟ ହେଉଛି ସେହି ଅଜ୍ଞାନମାନଙ୍କ ପାଇଁ, ଯେଉଁମାନଙ୍କର ଦୃଷ୍ଟି କେଉଁଠି ଦୃଶ୍ୟରେ ଅଟକିରହିଛି, ଦୃଶ୍ୟ ସହିତ ସତ୍ୟତ୍ୱ ବୁଦ୍ଧି ରଖିଛି, କିନ୍ତୁ ଗୁରୁ ଉପଦିଷ୍ଟ ମୁମୁକ୍ଷୁମାନଙ୍କ ପାଇଁ ଯେଉଁଠି ଏକ ସର୍ବତ୍ର ଏକ ଅଖଣ୍ଡ ସତ୍ତା ରହିଛି, ସେଇଠି କେଉଁ ଆଡ଼କୁ ଯିବ ? ଏବଂ କେଉଁଠି ଗାତ ଅଛି ଯେଉଁଠି ପଡ଼ିଯିବ ?

**ସମଦରଶୀ ସଦ୍‌ଗୁରୁ ମିଲା ଦିୟା ଅବିଚଲ ଜ୍ଞାନ ।**
**ଜହଁ ଦେଖ ତହଁ ଆପ ହେ ଦୁଜା ନାହିଁ ଆନ ।।**

ଜ୍ଞାନୀର ଦୃଷ୍ଟି ଯେଉଁଠି ବି ପଡୁ ସେ ସ୍ୱସତ୍ତା ଠାରୁ ଭିନ୍ନ ଅନ୍ୟ କିଛି ମାନେ ନାହିଁ, ଜାଣେ ନାହିଁ । ତାଙ୍କର ସବୁ ଅବସ୍ଥାରେ ସମାଧି ହୋଇଥାଏ ।

ତେଣୁ ମନକୁ ଅଟକେଇ ଦେବା ଯୋଗ ନୁହେଁ ବରଂ ମନକୁ ବୁଝିବା, ମନକୁ ଦେଖିବା ହିଁ ଯୋଗ । ମନକୁ ଗୋଟିଏ ନିଶ୍ଚିତ କାର୍ଯ୍ୟ ଆବଶ୍ୟକ, ତା'ପରେ ସେ ତୁମକୁ ବ୍ୟସ୍ତ କରିବ ନାହିଁ । ଖାଲି ମସ୍ତିଷ୍କ ହିଁ ସଇତାନର ଘର । ମନକୁ ପ୍ରେମ ଆବଶ୍ୟକ, ସେ ତା' ପାଇଁ ବାହାରକୁ ବହୁତ ଦୂରଯାଏ ଆଖି ମେଲା କରି

ଚାହିଁଥାଏ ଏବଂ କେଉଁଠି ନ ମିଳିଲା ପରେ ଥକିଯାଇ ଘରେ ଆସି ଶୋଇପଡ଼େ । ପୁଣି ସକାଳୁ ଉଠିଲେ ଚାଲେ ପୁରୁଣା ଧନ୍ଦା । ତୁମେ ମନକୁ ପ୍ରେମରେ ଭରିଦିଅ ଆତ୍ମା ସାଙ୍ଗରେ, ସନ୍ଥଙ୍କ ସାଙ୍ଗରେ, ଶାସ୍ତ୍ର ସାଙ୍ଗରେ, ଚିନ୍ତନ ସହିତ ତାକୁ ଯୋଡ଼ିଦିଅ, ସେ ସେଇଠି ରସ ଗ୍ରହଣ କରିବାରେ ଲାଗିବ । ମନ ମଧୁପ ହେଉ ହେଉ ସବୁ ବ୍ୟସ୍ତତା ସ୍ୱତଃ ଦୂର ହୋଇଯିବ । ସେ ପୁଣି ବ୍ୟସ୍ତ କରିବ ନାହିଁ। ବର୍ତ୍ତମାନ ବି ବିଚରା କରୁନାହିଁ, ସବୁବେଳେ ନିଜ କାମରେ ଲାଗିରହିଛି । କିନ୍ତୁ ତାହା ବିରୁଦ୍ଧରେ ଅଭିଯୋଗ କରିବା ତୁମର ଅଭ୍ୟାସରେ ପଡ଼ିଗଲାଣି । ସେ ତ ବିଚରା ମାଲିକ ପ୍ରତି ବିଶ୍ୱସ୍ତ ହୋଇ କାମ କରୁଛି । ସେ' ତ ସବୁ ସମୟରେ କାମ ଚାହୁଁଛି, ସେ ଚୁପ୍‌ଚାପ୍ ବସି ଖାଇବାବାଲା ଅଳସୁଆ ନୁହେଁ । ଏଣୁ ମନ ସହିତ ଶତ୍ରୁତା ଭାବ ଦୂରେଇ ଦିଅ, ତା ସହିତ ମିତ୍ରତା କର । ଶତ୍ରୁତା ଦ୍ୱାରା କାହାକୁ ଜିତିପାରିବ ନାହିଁ । ବାହାରେ ଜିତି ନେଇପାର କିନ୍ତୁ ଭିତରେ ଜିତିବା ପାଇଁ ଶତ୍ରୁତା ନୁହେଁ, ପ୍ରେମ ହିଁ ଏକମାତ୍ର ରାସ୍ତା । ବାସ୍, ପ୍ରେମ ପାଉ ପାଉ ସେ' ତୁମର ଆଜ୍ଞାକାରୀ ପୁତ୍ର ଠାରୁ ଅଧିକ ଆଜ୍ଞାକାରୀ ସେବକ ହେବ । ସବୁବେଳେ ମନ ସାଙ୍ଗରେ ବହୁତ ଅତ୍ୟାଚାର ହୋଇଛି । ଆଜି ପର୍ଯ୍ୟନ୍ତ ଲୋକମାନେ, ସନ୍ଥମାନେ, ଶାସ୍ତ୍ରକାରମାନେ ତାଙ୍କୁ ବୁଝିବା ଦିଗରେ ଭୁଲ୍ କରି ଆସିଛନ୍ତି । ସେଥିପାଇଁ ବୁଝାଇବାରେ ବି ଭୁଲ୍ ହୋଇଛି ।

ମନର ନିଜ ଆତ୍ମା, ସାକ୍ଷୀ ସାଙ୍ଗରେ କେତେ ପରିମାଣରେ ଅନନ୍ୟ ପ୍ରେମ ଅଛି, ତାହା କେବେ ହେଲେ ତୁମ୍ଭେମାନେ ନିଷ୍ପକ୍ଷ ଏବଂ ଶାନ୍ତ ହୋଇ ଭାବିନାହଁ ଯେ, ଭଲ-ମନ୍ଦ ଯାହା ବି ସେ ବାହାରୁ ଗ୍ରହଣ କରୁଛି ସାକ୍ଷୀକୁ ହିଁ ଆଣିଦେଉଛି । ଏକୁଟିଆ ଚୋରାରେ କିଛି କରୁନାହିଁ । ସାକ୍ଷୀର ପ୍ରସନ୍ନତା ପାଇଁ ହିଁ ପ୍ରତି ମୁହୂର୍ତ୍ତରେ ସେ ବ୍ୟାକୁଳ ରହୁଛି, ଏବଂ ପ୍ରତ୍ୟେକ ନୂଆବସ୍ତୁକୁ ଆଣି ନିଜ ମାଲିକ ଆଗରେ ପ୍ରସ୍ତୁତ କରୁଛି ଯେ, ହୁଏତ ତାହା ତାଙ୍କ ପସନ୍ଦକୁ ଆସିଯିବ । ଯଦି ପସନ୍ଦ ଆସିଯାଏ, ତେବେ ପ୍ରାପ୍ତିର ସାଧନ ପାଇଁ ପ୍ରାଣ, ଇନ୍ଦ୍ରିୟ, ଶରୀରକୁ ଆଜ୍ଞା ଦେଇ ତତ୍‌କ୍ଷଣାତ୍ ବସ୍ତୁ ପ୍ରାପ୍ତି ପାଇଁ ପୂର୍ଣ୍ଣ ଚେଷ୍ଟା କରି ଆଣିଦେଉଛି । ଯଦି ସାକ୍ଷୀକୁ ସେହି ବସ୍ତୁ ପସନ୍ଦ ଆସିଲା ନାହିଁ, ତେବେ ଅନ୍ୟ ବସ୍ତୁକୁ ଖୋଜିବା ପାଇଁ ତତ୍‌କ୍ଷଣାତ୍ ବାହାରି ପଡ଼ୁଛି । ବିଚରା ସବୁ ସମୟରେ ଆପଣାର ସାକ୍ଷୀକୁ, ମାଲିକକୁ, ଖୁସି କରିବାରେ ହିଁ ଲାଗିଯାଉଛି । ତଥାପି ଏହିଭଳି ସେବା ପରାୟଣ ଚାକର ପ୍ରତି ଏତେ ଜୁଲମ୍ କାହିଁକି ? ଯଦି ତା'ର କୁଆଡ଼େ ଯିବା ମାଲିକକୁ ପସନ୍ଦ ନୁହେଁ, ତେବେ ତାକୁ ଜାଣିବା, ଭାବିବା, କରିବା ଶକ୍ତି କାହିଁକି ଦେଉଛନ୍ତି ? ମାଲିକର ପ୍ରେରଣା ପାଇଁ ହିଁ ତ ବିଚରା ଚାଲୁଛି । ପୁନଶ୍ଚ ଗୀତାରେ ସ୍ପଷ୍ଟ କୁହାଯାଇଛି ଯେ –

"ଇନ୍ଦ୍ରିୟାଣାଂ ମନଃ ଚ ଅସ୍ମି" – ୧୦/୨୨

ଇନ୍ଦ୍ରିୟମାନଙ୍କ ମଧ୍ୟରେ ମୁଁ ହିଁ ମନ । ଯେତେବେଳେ ଇନ୍ଦ୍ରିୟମାନଙ୍କ ମଧ୍ୟରେ ମନ ହିଁ ବ୍ରହ୍ମ, ତେବେ ମନର ଶୁଭାଶୁଭ ବୃତ୍ତି ସଂକଳ୍ପ–ବିକଳ୍ପ ବି ତ ବ୍ରହ୍ମ, କାରଣ, କାରଣ ଅନୁରୂପରେ ହିଁ କାର୍ଯ୍ୟ ହୋଇଥାଏ । ପୁନଶ୍ଚ ମନ ବ୍ରହ୍ମ ଯାହା ବି ଚିନ୍ତା କରେ ସେତେବେଳେ ସେ ନିଜ ଠାରୁ ଅଲଗା ବୋଲି କିଛି ନୁହେଁ, ତେଣୁ ସେ ଭାବିବ କ'ଣ ଏବଂ କେମିତି ? ତେଣୁ ତାହାର ଅଟକେଇବା–ନ ଅଟକେଇବା ଚଞ୍ଚଳ ବା ସ୍ଥିର ହେବା ସମାନ । କାରଣ ମନ ହିଁ ବ୍ରହ୍ମ ଏବଂ ବ୍ରହ୍ମଙ୍କ ପାଇଁ ନିଜ ଠାରୁ ଅଲଗା କିଛି ହୁଏ ନାହିଁ, ତେବେ ସେ' କାହାର ଚିନ୍ତନ କରିବ ଏବଂ କରିଲେ ବି ସେଥିରେ ମନର କ'ଣ ହାନୀ ହେବ ? ଏବଂ ନ କରିଲେ ବି ଲାଭ କ'ଣ ? ଗୀତାର ଚତୁର୍ଥ ଅଧ୍ୟାୟର ୨୪ ଶ୍ଳୋକରେ ତ ଯଜ୍ଞ, ଯଜ୍ଞର ସାମଗ୍ରୀ, ଅଗ୍ନି, ବ୍ରାହ୍ମଣ, ଫଳ ସବୁକୁ ବ୍ରହ୍ମ ବୋଲି କୁହାଯାଇଛି । ଯେତେବେଳେ ଘିଅ, ଜବ, ତେଲ, କାଠ, ଅଗ୍ନି ବ୍ରହ୍ମ ତେବେ ମନ କାହିଁକି ବ୍ରହ୍ମ ହେବନାହିଁ ? ତେଣୁ ମନ ବି ବ୍ରହ୍ମ । ଯେତେବେଳେ ସବୁ ହିଁ ବ୍ରହ୍ମ, ସେତେବେଳେ ବେଦର ଅଦ୍ୱୈତ ମତ ଖଣ୍ଡିତ ହୋଇଗଲା । ଦେଖ ! ଗୀତା ସେହି ସିଦ୍ଧାନ୍ତକୁ କହୁଛନ୍ତି –

**ବ୍ରହ୍ମାର୍ପଣଂ ବ୍ରହ୍ମ ହବିର୍ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତମ୍ ।**
**ବ୍ରହ୍ମୈବ ତେନ ଗନ୍ତବ୍ୟଂ ବ୍ରହ୍ମ କର୍ମସମାଧିନା ।।** – ଗୀତା ୪/୨୪

ହେ ଚିଦାତ୍ମନ୍ ! ଯଦି ମନର ସ୍ଥିରତା ଦ୍ୱାରା ତୁମେ ନିଜକୁ ଶାନ୍ତ ଏବଂ ଆନନ୍ଦ ରୂପ ବୋଲି ମାନିନେବ, ତେବେ ବେଦ ସିଦ୍ଧାନ୍ତର ବିରୋଧ ହୋଇଯିବ, କାରଣ ବେଦରେ ଆତ୍ମବ୍ରହ୍ମଙ୍କୁ ନିରପେକ୍ଷ ଆନନ୍ଦରୂପ ବୋଲି କୁହାଯାଇଛି, ବିଷୟକୁ ସାପେକ୍ଷିକ ଆନନ୍ଦ ରୂପ କୁହାଯାଇନି । ମନ ତ ଆତ୍ମାର ଦୃଶ୍ୟ । ଯଦି ମନ ସ୍ଥିର ହେଲେ ତୁମେ ନିଜକୁ ଆନନ୍ଦ ରୂପ ବୋଲି ମାନୁଛ, ତେବେ ଆତ୍ମା ମନର ଅଧିନ ହୋଇଯିବ । ମାତ୍ର ସେ' ତ ପୂର୍ଣ୍ଣାନନ୍ଦ, ସର୍ବୋପରି ଏକରସ । ତେଣୁ ଏହା ନିଶ୍ଚୟ କର ଯେ, ମନ ଚଞ୍ଚଳ ହେଲେ ବି ଆମେ ଯେମିତି କି ସେମିତି ପୂର୍ଣ୍ଣ ଅଚଳ ଏବଂ ଆନନ୍ଦ ସ୍ୱରୂପ ଅଟୁ । ନିଜର ପୂର୍ଣ୍ଣତା ପାଇଁ ମନକୁ ଏବଂ ତା'ର ସ୍ଥିର ହେବାର ସାମାନ୍ୟତମ ଆବଶ୍ୟକତା ନାହିଁ । ନା ତା'ର ଚଞ୍ଚଳତାରେ ଆମର ପୂର୍ଣ୍ଣତା, ଆନନ୍ଦତା, ଅଖଣ୍ଡତା, ମୁକ୍ତତାରେ କୌଣସି ବାଧା ହିଁ ସୃଷ୍ଟି ହୋଇପାରିବ ? ପ୍ରକୃତିରେ ସବୁକିଛି ଅବାଧ ଗତିରେ ବହିଚାଲିଛି । ଦେଖ ଝରଣାକୁ, ନଦୀଗୁଡ଼ିକୁ, ପବନକୁ, ପୃଥିବୀକୁ, ତେଣୁ ମନ ତ ପୁଣି ପ୍ରକୃତିର ଏକ ଅଂଶ, ତାକୁ କାହିଁକି ବହିବା ସମୟରେ ବାଧା ଦେବାକୁ ଚାହୁଁଛ ? ତୁମେ ତ ହେଉଛ ନଦୀ ମଝିରେ ଅଚଳ ଚଟାଣ ରୂପକ ଆତ୍ମା । ତା'ର ବହିବା ନ ବହିବା ଦ୍ୱାରା ତୁମର କୌଣସି

କ୍ଷତି ବା ଲାଭ ନାହିଁ । ମନର ଦୈନିକ କ୍ରମ ହେଉଛି ଜାଗ୍ରତରେ ଚଞ୍ଚଳ ହେବା ଏବଂ ଗଭୀର ନିଦରେ ଶାନ୍ତ ବା ସୁଷୁପ୍ତି ଅବସ୍ଥାରେ ସେ ବିନା ଚେଷ୍ଟାରେ ବିନ ସାଧନାରେ ସ୍ୱତଃ ଶାନ୍ତ ହୋଇଯାଏ । ତେଣୁ ଯେତେବେଳେ ସବୁ କର୍ମଚାରୀ ତୁମର ଫେକ୍ଟ୍ରୀରେ ଜାଗ୍ରତ ଅବସ୍ଥାରେ ନିଜ ନିଜ କାର୍ଯ୍ୟ କରିଥାନ୍ତି ଏବଂ ତୁମର ବି ସେମାନଙ୍କ ପ୍ରତି କୌଣସି ଅଭିଯୋଗ ନାହିଁ, ସେତେବେଳେ ସେହି ଗରିବ ମନ ଉପରେ କାହିଁକି ପ୍ରତିବନ୍ଧକ ଲଗାଇବାକୁ ଚାହୁଁଛ ? ସେଥିପାଇଁ ମନକୁ ବି ଏହା ସନ୍ତାପିତ କରୁଛି ଯେ, ସମସ୍ତେ ତ ନିଜ କାର୍ଯ୍ୟରେ, ନିଜ ସମୟରେ ଜାଗ୍ରତ ଅଛନ୍ତି, ମୋତେ କାହିଁକି ଶୁଆଇ ପକାଇବାକୁ ଚାହୁଁଛନ୍ତି ? ଏବଂ ଯେତେବେଳେ ବାକୀ ସବୁ କର୍ମଚାରୀ ମୋର ଅନୁପସ୍ଥିତି ଯୋଗୁ ହିଁ ଯେଉଁଠି ସେଇଠି ଶୋଇପଡ଼ିବେ ମୋ ବିନା ପୁଣି ସେମାନଙ୍କ ଦ୍ୱାରା କୌଣସି ବି କାର୍ଯ୍ୟ ସମ୍ଭବ ହେବ ନାହିଁ । ପ୍ରତିଦିନ ସୁଷୁପ୍ତି ଦ୍ୱାରା ପ୍ରତ୍ୟେକଙ୍କୁ ଏହି ଶିକ୍ଷା ବି ଦେଉଛି ଯେ, ମୋ' ପଛରେ ପଡନାହିଁ, ଯଦି ମୋର ଅଭାବ ହୋଇଗଲା ତେବେ ସମସ୍ତେ ମୃତ ହୋଇଯିବେ । ଦଶଟି ଇନ୍ଦ୍ରିୟ ମୋ ବିନା ଶୂନ୍ୟ ଭଳି । ତେଣୁ ଜାଗ୍ରତରେ ମୋତେ କେବେ ଚିଡାଅ ନାହିଁ, କାମ କରିବାକୁ ଦିଅ ଏବଂ ଅନ୍ୟମାନଙ୍କୁ କରାଇବାକୁ ଦିଅ । ଯଦି ତୁମେ ସେହି ଫେକ୍ଟ୍ରୀର ଉନ୍ନତି ଚାହୁଁଛ, ତେବେ ମୋତେ ବିବ୍ରତ କରନାହିଁ ନଚେତ୍ ମୁଁ ସବୁ ସମୟ ପାଇଁ ଫେକ୍ଟ୍ରୀର ମୁଖ୍ୟ ଦ୍ୱାରରେ ହିଁ ତାଲା ପକାଇଦେବି, ଏବଂ ସବୁ କାରୀଗର ପଳେଇଯିବେ । ମୋ ଯୋଗୁ ସେମାନେ ସବୁ ତିଷ୍ଠି ରହିଛନ୍ତି, ତେଣୁ ମୋର ନିୟମିତ ଅବସ୍ଥାରେ ବାଧା ସୃଷ୍ଟି କର ନାହିଁ – ଆତ୍ମ ପ୍ରେମୀମାନଙ୍କ ପାଇଁ ଏହା ମୋର ପ୍ରାର୍ଥନା ।

ଯେମିତି ମା'କୁ ଦେଖୁ ଦେଖୁ ପିଲା ଆନନ୍ଦିତ ଏବଂ ସ୍ଫୁର୍ତ୍ତିବାନ ହୋଇଯାଏ, ମାଲିକକୁ ଦେଖୁ ଦେଖୁ ଚାକର ଆଳସ୍ୟ ଛାଡ଼ି ଛିଡ଼ା ହୋଇଯାଏ ଏବଂ ପ୍ରସନ୍ନ ହୋଇଯାଏ, ସେହିପରି ମନ ନିଜର ସାକ୍ଷୀକୁ ଜାଗ୍ରତ ଅବସ୍ଥାରେ ପାଇ ସ୍ଫୂର୍ତ୍ତିବାନ ତଥା ପ୍ରସନ୍ନ ହୋଇଯାଇଥାଏ ଏବଂ ଖୁସି ହୋଇ ଏଣେ ତେଣେ ନାଚି ନାଚି ତାକୁ ବ୍ୟସ୍ତ କରିପକାଏ । ଯେମିତି ମୟୂର ମୟୂରୀକୁ ଦେଖି କ୍ରୀଡ଼ା କରିବାରେ ଲାଗିଥାଏ, ଡେଣା ମେଲାଇ ନୃତ୍ୟ କରିଥାଏ ଏବଂ ସେଥିରେ ମୟୂରୀ ବି ଆନନ୍ଦ ପାଇଥାଏ, ଦୁଃଖ ନୁହେଁ । ସେହିପରି ମନ ମୟୂର ବି ନିଜର ଆତ୍ମା ରୂପକ ମୟୂରୀକୁ ଦେଖି ନାଚ କୁଦ କରିଥାଏ । ତେବେ ସେଥିରେ କ'ଣ ଭୁଲ ଅଛି ? ତାକୁ ଖୁସିଥିବାର ଦେଖି ଚଞ୍ଚଳ କହିଦେବା ଭୁଲ୍ । ଚଞ୍ଚଳ ତ ତାକୁ ସେତେବେଳେ କୁହାଯାଇପାରିବ, ଯେତେବେଳେ ସେ ଦ୍ରଷ୍ଟାର ଦୃଷ୍ଟିରୁ ହଜିଯାଏ, ଲୁଚିଯାଏ, ବାହାରେ କେଉଁଠି ଅଟକି ଯାଏ । ମାତ୍ର ମନ ତ ଆତ୍ମାର ଏଭଳି ଅନନ୍ୟ ପ୍ରେମିକ ଯେ, ବିନା

ସାକ୍ଷୀରେ ସେ ଗୋଟିଏ ମୁହୂର୍ତ୍ତ ପାଇଁ ବି କେଉଁଠି ଅଟକେ ନାହିଁ ନା କୁଆଡ଼େ ଦେଖେ ଏବଂ ନା କୁଆଡ଼େ ଯାଏ ? ସବୁ ଅବସ୍ଥା ଗୁଡ଼ିକରେ ତାହା ସହିତ ସାକ୍ଷୀ ରହିଛି । ବିନା ସାକ୍ଷୀରେ ତାହାର କୌଣସି କାର୍ଯ୍ୟ କରିବାର ପ୍ରବୃତ୍ତି ହିଁ ହୁଏନାହିଁ । ବିନା ସାକ୍ଷୀର ଦର୍ଶନରେ କୌଣସି କାର୍ଯ୍ୟରେ ମନର ବି ମନ ଲାଗେ ନାହିଁ ।

ଯାହାଙ୍କ ଦୃଷ୍ଟିରେ ମନ ନାମକ କୌଣସି ବସ୍ତୁ ଅଛି, ତାହାଙ୍କର ଅଦ୍ୱୈତ ଜ୍ଞାନ ହସିବା ଯୋଗ୍ୟ । ସେ' ବର୍ତ୍ତମାନ ନିଜ ଆତ୍ମାର ବ୍ୟାପକତା, ପୂର୍ଣ୍ଣତା, ଅଖଣ୍ଡତାର ଅନୁଭବ ନିଶ୍ଚୟ କରିନାହାନ୍ତି । କେବଳ ବର୍ତ୍ତମାନ ସେ' ଶୁଆ ଭଳି ଶବ୍ଦ ଗୁଡିକର ରଚନା କରିଛନ୍ତି । ଯଦି ତୁମେ ଅଦ୍ୱୈତ ଆତ୍ମସତ୍ତା ଅଟ, ତେବେ କହିଲ ପୁଣି ମନ କେଉଁଠି ଅଛି, ଯାହା ବିବ୍ରତ କରୁଛି ?

**ଶଶେ ଶୃଙ୍ଗ କୋ ଧନୁଷ ଲଇକେ**
**ଗଗନ ପୁରୁଷେକୁ ମାରାରେ ।**

ଭଳି କଥା ହେଉଛି ମନ ବ୍ୟସ୍ତ କରୁଛି ।

ଯେମିତି ରାଜାଙ୍କର ଶୋଭା, ନଗରର, ପ୍ରଜା, ସୈନ୍ୟମାନଙ୍କ ସାଙ୍ଗରେ ଥାଏ, ପ୍ରଜା ନଥିଲେ ତାଙ୍କୁ କେହି ରାଜା ନାମରେ ଡାକିନଥାନ୍ତି, ସେହିପରି ଆତ୍ମାର ଶୋଭା ଅନାତ୍ମ ମନ ସାଙ୍ଗରେ ଥାଏ । ଦେହ, ଇନ୍ଦ୍ରିୟ, ପ୍ରାଣ, ମନ ଇତ୍ୟାଦି ପ୍ରଜା ନ ହୋଇଥିଲେ ଆତ୍ମ ରୂପକ ରାଜାଙ୍କର ମହତ୍ତ୍ୱ କ'ଣ ? ମନୁଷ୍ୟ ନଥିଲେ ହୀରାର ମହତ୍ତ୍ୱ କ'ଣ ? ଅନାତ୍ମା ଦ୍ୱାରା ହିଁ ଆତ୍ମାର ଗୌରବ, ମହିମା ଝଲସି ଉଠେ । ରାତି ନଥିଲେ ଦିନର ମହତ୍ତ୍ୱ କ'ଣ ? ଦୁଃଖ ନଥିଲେ ସୁଖର କୌଣସି ମୂଲ୍ୟ ହିଁ ନାହିଁ । ତେଣୁ ଅନାତ୍ମ ମନ, ଚୈତନ୍ୟ ଆତ୍ମା ପାଇଁ ବିଘ୍ନକାରୀ ନୁହେଁ । ଅଳଙ୍କାର ପାଇଁ ହିଁ ସ୍ୱର୍ଣ୍ଣର ମହିମା ଅଛି, ସେ ମୁଣ୍ଡରେ ଚଢୁଛି, ନଚେତ୍ ଢେଲା ଭଳି ସୁନାର କୌଣସି ଉପଯୋଗିତା ନାହିଁ, କେବଳ ବନ୍ଦ କରି ରଖିବା ଛଡ଼ା ।

ପୁନଶ୍ଚ ଭଲ ଭାବରେ ଜ୍ଞାନ ରୂପକ ରାଜାଙ୍କ ଦ୍ୱାରା ମରିଥିବା ମନରୂପକ ଶତ୍ରୁ ଭଲା ରଣକ୍ଷେତ୍ରରେ ପଡ଼ିଥିବାର ଦେଖୁଥାଉ, ସେଥିରେ ରାଜାଙ୍କର କୌଣସି ହାନୀ ନାହିଁ, ବରଂ ଓଲଟା ସେଥିରେ ରାଜାଙ୍କର ଗୌରବ ହିଁ ବଢିଥାଏ, ତାକୁ ଫିଙ୍ଗିବା, ଜଳାଇବା, ପୋତିବାରେ ନୁହେଁ । ଯଦି ତୁମେ ମନ ନୁହଁ, ତେବେ ପୁଣି ତୁମେ ମନକୁ ଅଲଗା କରିଦେଲେ ସ୍ୱୟଂ ବି ଖଣ୍ଡିତ ହୋଇଗଲା । ତୁମର ବ୍ୟାପକତାକୁ ତୁମେ ଖଣ୍ଡିତ ରୂପରେ ପାଇବ ବା ନିଜର ଅଖଣ୍ଡ ସତ୍ତା ବ୍ୟତୀତ ଅନ୍ୟ କିଛି ଦେଖନାହିଁ ଅଥବା ମନକୁ ନିଜ ସର୍ବସ୍ୱ ମାନନାହିଁ । ଯଦି ତୁମର ସାମାନ୍ୟ ପରିମାଣରେ ବି ବୁଦ୍ଧି, ବିବେକ ବା ବିଚାର କରିବାର ଶକ୍ତି ଅଛି,

ତେବେ ନିଜର ପୂର୍ଣ୍ଣତାର ଅନୁଭବ କର, ଯାହା ତୁମର ସ୍ୱରୂପ । ଯାହା ତୁମେ ନୁହଁ, ତେବେ ପୁଣି ତାହାର ଚିନ୍ତନ କାହିଁକି କରୁଛ ଏବଂ ଅଯଥାରେ ଦୁଃଖୀ ହେଉଛ । ଯଦି ତୁମେ ମନ ତେବେ ମନର ଚିନ୍ତନ କର, ଦେହ, ଇନ୍ଦ୍ରିୟ, ପ୍ରାଣ ହୋଇଥାଅ ସେମାନଙ୍କର ଚିନ୍ତନ କର ଏବଂ ଯଦି ଆତ୍ମା ହୋଇଥାଅ, ତେବେ ନିଜର ଅଚଳ, ସତ୍ ଚିତ୍-ଆନନ୍ଦ, ସାକ୍ଷୀ, ଅସଙ୍ଗ, ନିର୍ବିକାର, ନିତ୍ୟମୁକ୍ତ, ଶୁଦ୍ଧ, ବୁଦ୍ଧ ସ୍ୱରୂପର ଚିନ୍ତନ କର । ମନେରଖ, ନିଜକୁ ଛୋଟ କରିବାର କୌଣସି ଚିନ୍ତନ କରନାହିଁ, ସବୁବେଳେ ବଡ଼ ବୋଲି ବୁଝିବା, ବଡ ହେବାର ବିଚାର ହିଁ କରୁଥାଅ, କାରଣ ଯେମିତି ମତି ସେମିତି ଗତି ହୋଇଥାଏ । ଏବେ ସ୍ୱୟଂ ଚିନ୍ତା କରିନିଅ ଯେ, ତୁମେ ମନକୁ ଚାକର ହେବା ଚାହୁଁଛ ନା ଆତ୍ମା ମାଲିକ ହେବା ଚାହୁଁଛ ।

## ଭଜନ

କି ଅମୃତ ଗୁରୁ ଦେଲ ଚଖାଇ, ଅନନ୍ତ ପଥରେ ପଥିକ ଆଜି ମୁଁ
ସ୍ୱଚ୍ଛନ୍ଦେ ଉଡୁଛି ଡେଣା ମେଲାଇ ।।୦।।

ନୀରସ ଶୃଙ୍ଖଳା ଥିଲା ଏ ଜୀବନ
ଜୀବ ଥିଲା ସିନା ନଥିଲା ସ୍ପନ୍ଦନ
ସ୍ୱର ଥିଲା ସିନା ନଥିଲା ଝଙ୍କାର
ବିଷାଦ ବିଷରେ ଥିଲି ମୁଁ ଜର୍ଜର
କି ଛୁଆଁ ଛୁଇଁଲ କୁହ ପ୍ରିୟତମ
ନିଘୋଡ ନିଦରୁ ଉଠିଲି ଚେଇଁ ।।୦।।

ମୋ ହୃଦ ପିଆଲା ପ୍ରେମେ ଜର ଜର
ନାଚି ଉଠୁଛି ମୋ ପାଦର ଘୁଂଗୁର
ନିଜ ସୁଗନ୍ଧରେ ମୁଁ ଆଜି ବିଭୋର
ଅନାହତ ନାଦେ କମ୍ପୁଛି ମୋ ପୁର
ଆତ୍ମରସ ପିଇ ମାତାଲ ଆଜି ମୁଁ
ମୋ ପାଇଁ ଦିବସ ରଜନୀ କାହିଁ ।।୨।।

ମେଘ ଦେଖି ଯେହ୍ନେ ନାଚଇ ମୟୂରୀ
ଅଜଣା ପୁଲକେ ଯାଏ ପ୍ରାଣ ଭରି
ପୂରି ଉଠେ ମନ ଆନନ୍ଦ ଉଲ୍ଲାସେ
ବିଭୋର ହୁଏ ମୁଁ ତୁମରି ପରଶେ
କି ସୁରେ ଆଜି ଗାଇବି ଗୀତ ମୁଁ
ଭାବ ଧାଇଁଯାଏ ଭାଷାକୁ ଡେଇଁ ।।୩।।

– ରମେଶ



## ଭଜନ

ତୋ' ଭିତରେ ବାଜେ ପରମ ସଂଗୀତ
ଶୁଣିକି ପାରୁନୁ ବାୟା
ସିଏ ତୋ' ଭିତରେ ରହିଛି ଯେମିତି
କାୟା ସଂଗେ ଥାଏ ଛାୟା ।। ୦ ।।

ତୁ ଜାଣିପାରୁନୁ କି ବାୟା...

ତୋ' ଭିତରେ ଥାଇ ସବୁ ସେ' କରୁଛି
ତୋ' ପାଦରେ ସିଏ ଚାଲୁଛି ବୁଲୁଛି
ତୋ' କଣ୍ଠରେ ବସି ଗୀତ ବି ସେ ଗାଏ
ତୋ' ସାଥୀରେ ଉଠେ ତୋ' ସାଥିରେ ଧାଏଁ
ଜାଣିବୁ କେବେ ତୁ ବାୟା ।। ୧ ।।
ତୁ ଜାଣିପାରୁନୁ କି ବାୟା...

ତୁ କିଛି କରୁନୁ ସବୁ କରୁଛି ସେ
ସବୁ କରମର ଉତ୍ସ ସେଇ ନିଜେ
ତୋ ଭିତରେ ବସି ପରିକ୍ରମା କରେ
ଯେଣିକି ତୁ ଚାହୁଁ ସିଏ ମଂଗ ମୋଡ଼େ
ମିଛେ ଦାଉ ସାଧେ ବାୟା ।। ୨
ତୁ ଜାଣିପାରୁନୁ କି ବାୟା...

ସବୁ ରସ ଭୋଗେ ତୋ' ଜିଭରେ ସିଏ
ସବୁ ଦୁଃଖସୁଖ ପଛରେ ସେ ଥାଏ
ନିଜେ ସିଏ କର୍ତ୍ତା ନିଜେ ବି ଭୋକତା
ସବୁ ଦେଖେ ସିନା ନୀରବ ସେ ସଦା
ତାକୁ ଛୁଏଁନାହିଁ ମାୟା ।। ୩ ।।
ତୁ ଜାଣିପାରୁନୁ କି ବାୟା...

– ରମେଶ

✠✠✠

# ଭଜନ

ତୋ' ଭିତରେ ବାଜେ ପରମ ସଂଗୀତ
ଶୁଣିକି ପାରୁନୁ ବାୟା
ସିଏ ତୋ' ଭିତରେ ରହିଛି ଯେମିତି
କାୟା ସଂଗେ ଥାଏ ଛାୟା ।। ୦ ।।

ତୁ ଜାଣିପାରୁନୁ କି ବାୟା...

ତୋ' ଭିତରେ ଥାଇ ସବୁ ସେ' କରୁଛି
ତୋ' ପାଦରେ ସିଏ ଚାଲୁଛି ବୁଲୁଛି
ତୋ' କଣ୍ଠରେ ବସି ଗୀତ ବି ସେ' ଗାଏ
ତୋ' ସାଥୀରେ ଉଠେ ତୋ' ସାଥିରେ ଧାଏଁ
ଜାଣିବୁ କେବେ ତୁ ବାୟା ?।। ୧ ।।
ତୁ ଜାଣିପାରୁନୁ କି ବାୟା...

ତୁ କିଛି କରୁନୁ ସବୁ କରୁଛି ସେ
ସବୁ କରମର ଉତ୍ସ ସେଇ ନିଜେ
ତୋ ଭିତରେ ବସି ପରିକ୍ରମା କରେ
ଯେଣିକି ତୁ ଚାହୁଁ ସିଏ ମଂଗ.ମୋଡ଼େ
ମିଛେ ଦାଉ ସାଧେ ମାୟା ।। ୨
ତୁ ଜାଣିପାରୁନୁ କି ବାୟା...

ସବୁ ରସ ଭୋଗେ ତୋ' ଜିଭରେ ସିଏ
ସବୁ ଦୁଃଖସୁଖ ପଛରେ ସେ' ଥାଏ
ନିଜେ ସିଏ କର୍ତ୍ତା ନିଜେ ବି ଭୋକତା
ସବୁ ଦେଖେ ସିନା ନୀରବ ସେ' ସଦା
ତାକୁ ଛୁଏଁନାହିଁ ମାୟା ।। ୩ ।।
ତୁ ଜାଣିପାରୁନୁ କି ବାୟା...

– ରମେଶ



## ସ୍ୱାମୀ ନିରଞ୍ଜନ ସାହିତ୍ୟ ସମ୍ଭାର

### ହିନ୍ଦୀ ଭାଷାରେ :

୧) ଜ୍ଞାନୋଦୟ, ୨) ଶାନ୍ତିପୁଷ୍ପ, ୩) ଭୁଲି ବିସ୍ରୀ ସ୍ମୃତି, ୪) ସରଳ ବେଦାନ୍ତ ପ୍ରଶ୍ନୋତ୍ତରୀ (ଭାଗ-୧), ୫) ସରଳ ବେଦାନ୍ତ ପ୍ରଶ୍ନୋତ୍ତରୀ(ଭାଗ-୨), ୬) ସରଳ ବେଦାନ୍ତ ପ୍ରଶ୍ନୋତ୍ତରୀ(ଭାଗ-୩), ୭) ସରଳ ବେଦାନ୍ତ ପ୍ରଶ୍ନୋତ୍ତରୀ(ଭାଗ-୪), ୮) ମୈଁ ଅମୃତ୍ କା ସାଗର, ୯) ମୈଁ ବ୍ରହ୍ମ ହୁଁ, ୧୦) ପ୍ରାଣାୟାମ, ମୁଦ୍ରା, ଧ୍ୟାନ ଏବଂ ବେଦାନ୍ତ ପାରିଭାଷିକ ଶବ୍ଦକୋଷ, ୧୧) ସୀତା ଗୀତା, ୧୨) ରାମ ଗୀତା, ୧୩) ଗୁରୁ ଗୀତା, ୧୪) ପଞ୍ଚଦଶୀ ପ୍ରଶ୍ନୋତ୍ତରୀ ଦୀପିକା, ୧୫) ଭାଗବତ ରହସ୍ୟ, ୧୬) ଆତ୍ମ ସାକ୍ଷାତ୍କାର ୧୭) ମନ୍ କୀ ଜାନେ ରାମ୍, ୧୮) ଯୋଗବଶିଷ୍ଠ ସାର, ୧୯) ନିରଞ୍ଜନ ଭଜନାମୃତ ସରିତା, ୨୦) ସ୍ୱରୂପ ଚିନ୍ତନ, ୨୧) କର୍ମ ସେ ମୋକ୍ଷ ନହିଁ, ୨୨) ଶ୍ରଦ୍ଧା କି ପ୍ରତିମା ସଦ୍‌ଗୁରୁ, ୨୩) ଅମୃତ ବିନ୍ଦୁ, ୨୪) ଉପନିଷଦ୍ ସିଦ୍ଧାନ୍ତ ଏବଂ ବେଦାନ୍ତ ରତ୍ନାବଲୀ, ୨୫) ସହଜ ସମାଧି, ୨୬) ଜ୍ଞାନଜ୍ୟୋତି, ୨୭) କବୀର୍ ସାଖୀ ସଙ୍କଳନ, ୨୮) ସହଜ ଧ୍ୟାନ, ୨୯) ହେ ରାମ୍ ! ଉଠୋ ଜାଗୋ, ୩୦) ସଦ୍‌ଗୁରୁ କୌନ୍ ? ୩୧) ଶ୍ରୀରାମ ଚିନ୍ତନ, ୩୨) ତତ୍ତ୍ୱମସି, ୩୩) ସାକ୍ଷୀ କୀ ଖୋଜ୍, ୩୪) ଆତ୍ମଜ୍ଞାନ କେ ହୀରେମୋତି, ୩୫) ଅନମୋଲ୍ ବଚନାମୃତ, ୩୬) ଲାଖ୍ ରୋଗୌଁ କୀ ଏକ ଦୱା, ୩୭) ହଂସ ଗୀତା, ୩୮) ଆତ୍ମଜ୍ଞାନ କେ ଲୀୟେ ଉପଯୋଗୀ ଚିତ୍ରାବଲୀ, ୩୯) ଅଷ୍ଟାବକ୍ର ଗୀତାସାର, ୪୦) ଅଷ୍ଟାବକ୍ର ମହାଗୀତା, ୪୧) ଆତ୍ମଗୀତା (ଭଗବଦ୍ ଗୀତାସାର), ୪୨) ଶିବ ଗୀତାସାର, ୪୩) ଆତ୍ମ ପ୍ରବୋଧକ ସଂହିତା, ୪୪) ଜାନୋ ଫିର ମାନୋ ୪୫) ବିଚାର ହି ମାର୍ଗ ୪୬) ଜ୍ଞାନ ବିନା ମୁକ୍ତି ନହିଁ ।

### ଓଡ଼ିଆ ଭାଷାରେ :

୧) ମୁଁ ହିଁ ବ୍ରହ୍ମ, ୨) ମୁଁ ଅମୃତର ସାଗର, ୩) ଆତ୍ମ ସାକ୍ଷାତ୍କାର, ୪) ଶ୍ରଦ୍ଧାର ପ୍ରତିମା ସଦ୍‌ଗୁରୁ, ୫) ପ୍ରାର୍ଥନା ଏବଂ ଲଘୁ ବେଦାନ୍ତ ଶବ୍ଦକୋଷ, ୬) ଲଘୁ ବେଦାନ୍ତ ପ୍ରଶ୍ନୋତ୍ତରୀ, ୭) ନିରଞ୍ଜନ ବଚନାମୃତ, ୮) ସୀତାଗୀତା , ୯) ସହଜ ସମାଧି, ୧୦) ସହଜ ଧ୍ୟାନ, ୧୧) ଅମୂଲ୍ୟ ବଚନାମୃତ, ୧୨) ଆତ୍ମ ଗୀତା (ଭଗବଦ୍ ଗୀତା ସାର), ୧୩) ଶ୍ରୀରାମ ଚିନ୍ତନ,୧୪) ଜ୍ଞାନ ବିନା ମୁକ୍ତି ନାହିଁ, ୧୫) ଜାଣ ତାପରେ ମାନ, ୧୬) ଲକ୍ଷେ ରୋଗର ଗୋଟିଏ ଔଷଧ, ୧୭) ହଂସ ଗୀତା, ୧୮) ଆତ୍ମଜ୍ଞାନ ପାଇଁ ଉପଯୋଗୀ ଚିତ୍ରାବଳୀ, ୧୯) ନିରଂଜନ ମହାଭାଗବତ, ୨୦) ଅମୃତ ପଥ ୨୧) ବିଚାର ହିଁ ମାର୍ଗ

### ମରାଠୀ ଭାଷାରେ :

୧. ହୋୟ ! ମୀ ବ୍ରହ୍ମ ଆହେ

**ପୂଜ୍ୟ ସ୍ୱାମୀଜୀଙ୍କ ଅମୃତ ପ୍ରବଚନ ତଥା ଆତ୍ମଜ୍ଞାନ ଉପରେ ଆଧାରିତ ଭଜନର କ୍ୟାସେଟ୍ ଓ ସିଡ଼ି ଉପଲବ୍ଧ**

Visit us at : www.niranjanmission.org

ଗ୍ରନ୍ଥ ପ୍ରାପ୍ତି ପାଇଁ ସମ୍ପର୍କ କରନ୍ତୁ

ପ୍ଲଟ୍ ନଂ-୫୮/୬୦, ଦିବ୍ୟ ବିହାର, ସାମନ୍ତରାୟପୁର, ଭୁବନେଶ୍ୱର -୨, ଓଡ଼ିଶା
ଫୋନ୍ : ୦୯୪୩୭୦୦୬୫୬୬, ୭୮୭୩୩୩୫୬୫୬



ବେଦାନ୍ତ କେଶରୀ ସ୍ୱାମୀ ନିରଞ୍ଜନଜୀ

ମୁଁ କିଏ ? ଏଇ ବିଚାର ମନରେ ଉଠାଇବା ହିଁ ସର୍ବଶ୍ରେଷ୍ଠ ଜପ । ମନର ବୃତ୍ତିଦ୍ୱାରା କେବଳ ମନ୍ତ୍ର ଜପ କରି କେହି ବ୍ରହ୍ମ ହୋଇପାରିବେ ନାହିଁ । ଅର୍ଥାତ୍ ବ୍ରହ୍ମ ଅନ୍ୟତ୍ର ନାହିଁ, ବ୍ରହ୍ମ ଅନ୍ୟ କିଛି ନୁହେଁ- ସେ ତୁମର ଆତ୍ମା । ସେ ହିଁ ତୁମେ । ସେହି ଆତ୍ମାକୁ ବ୍ରହ୍ମ ସ୍ୱରୂପ ବୋଲି ଜାଣ ।

**ଅୟମାତ୍ମା ବ୍ରହ୍ମ ।**

ସ୍ୱାମୀ ନିରଂଜ